କିମ୍ବଦନ୍ତୀ ଜନଶ୍ରୁତି ଓ ଇତିହାସ ପୃଷ୍ଠାରେ

# ବାଣପୁରର ଇତିକଥା





ଡ଼ାଃ ଦିବ୍ୟସିଂହ ମିଶ୍ର

-କିମ୍ବଦନ୍ତୀ, ଜନଶ୍ରୁତି ଓ ଇତିହାସ ପୃଷ୍ଠାରେ-

# ବାଣପୁରର ଇତିକଥା



ଡ଼ାଃ ଦିବ୍ୟସିଂହ ମିଶ୍ର

ଲେଖକ - ଡ଼ାଃ ଦିବ୍ୟସିଂହ ମିଶ୍ର
ଭେଷଜ ବିଶେଷଜ୍ଞ
ଅଶୋକ ନଗର, ବାଲୁଗାଁ

ପ୍ରକାଶିକା - ଶ୍ରୀମତୀ ରେଣୁବାଳା ମିଶ୍ର
ଅଶୋକ ନଗର, ବାଲୁଗାଁ, ଖୋର୍ଦ୍ଧା

ପ୍ରଚ୍ଛଦ - ନନ୍ଦିନୀ ପ୍ରେସ୍, ବାଣପୁର

ମୁଦ୍ରଣ - ନନ୍ଦିନୀ ପ୍ରେସ୍, ବାଣପୁର

ପ୍ରଥମ ପ୍ରକାଶନ - ୧।୭।୨୦୦୩ ( ଶ୍ରୀ ଗୁଣ୍ଡିଚା )

ମୂଲ୍ୟ - ଟ ୮୦.୦୦

ପ୍ରାପ୍ତି ସ୍ଥାନ - ଗାୟତ୍ରୀ ବୁକ୍ ଷ୍ଟୋର
ରଘୁନାଥ ସାହି, ବାଣପୁର
ଫୋନ- (୦୬୭୫୬) ୨୨୩୦୩୯





Writer - Dr Dibyasingha Mishra, M.D.
Medicine Specialist
Ashok Nagar, Balugaon

Publisher - Smt. Renubala Mishra
Ashok Nagar, Balugaon

Cover Art - Nandini Press, Banpur

Printed at - Nandini Press, Banpur

Price - Rs. 80.00

Available At - Gayatri Book Store
Raghunath Sahi, Banpur
Ph.-(06756) 223039

# ଉତ୍ସର୍ଗ

ବାଲ୍ୟକାଳରୁ ମୁଁ ଯାହାଙ୍କ ମୁଖରୁ ପୁରାଣ ଉପନିଷଦ ଓ ଇତିହାସର ଆଭାସ ପାଇଥିଲି, ଯାହାଙ୍କର ସ୍ନେହ, ବାତ୍ସଲ୍ୟମମତା ତଥା ତାଡ଼ନାରେ ମୁଁ ମଣିଷ ଭଳି ମଣିଷଟିଏ ହୋଇଥିଲି ସେହି ପରମପୂଜନୀୟ ନନାଙ୍କ ( ୰ ବିନାୟକ ମିଶ୍ର) ଅନ୍ତିମ ଇଚ୍ଛା ଥିଲା ମୁଁ ଲେଖକ, କବି, ଐତିହାସିକ ହେବାପାଇଁ । ୧୯୨୫ ମସିହାଠାରୁ ୧୯୫୮ ମସିହା ପର୍ଯ୍ୟନ୍ତ ବାଣପୁର ଅଞ୍ଚଳରେ ଜଣେ ନିଷ୍ଠାବାନ୍ ଆଦର୍ଶ ପ୍ରାଥମିକ ଶିକ୍ଷକ ରୂପେ ସେ ବଉଳାବନ୍ଧ, ଅଲାଇଡ଼ିହ, ଚମ୍ପାଦେଇପୁର ଉ.ପ୍ରା ବିଦ୍ୟାଳୟର ଇତିହାସ ହୋଇଯାଇଛନ୍ତି ସତ୍ୟ, ତେବେ ତାଙ୍କର ଜୀବିତ ଥିବା ୬୦/୭୦ ବର୍ଷ ବୟସ୍କ ଛାତ୍ରମାନଙ୍କ ମୁହଁରୁ ତାଙ୍କର ଶିକ୍ଷାଦାନ ପ୍ରଣାଳୀ କିପରି ଆଦର୍ଶଗତ ଥିଲା ଶୁଣିଲେ ଏବେ ଆଶ୍ଚର୍ଯ୍ୟ ଲାଗୁଛି । ପରଲୋକରେ ଥିଲେ ମଧ୍ୟ ତାଙ୍କର ଆଶୀର୍ବାଦ ଓ ପ୍ରେରଣାରେ ଲିଖିତ ଏହି ବାଣପୁରର ଇତିକଥାକୁ ଆଜି ସେହି ସ୍ୱର୍ଗତ ଆତ୍ମା ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଅଛି ।

ଡ଼ାଃ ଦିବ୍ୟସିଂହ ମିଶ୍ର

# ମନ୍ତବ୍ୟ

ଡ଼ଃ ଦିବ୍ୟସିଂହ ମିଶ୍ର ବାଣପୁରର ଜଣେ ସୁଯୋଗ୍ୟ ଚିକିତ୍ସକ ଭାବରେ ସୁପରିଚିତ । ଚିକିତ୍ସା ମାଧ୍ୟମରେ ବାଣପୁର ବାସୀଙ୍କର ସେବା କରିବା ସଙ୍ଗେ ସଙ୍ଗେ, ବାଣପୁରର ଇତିହାସକୁ "ବାଣପୁର ଇତିକଥା"ରେ ପ୍ରକାଶ କରି ବାଣପୁର ବାସୀଙ୍କର ଆଖିଖୋଲିବାରେ ସେ ଯେଉଁ ଉଦ୍ୟମ କରିଛନ୍ତି ତାହା ନିଃସନ୍ଦେହରେ ପ୍ରଶଂସାର୍ହ । ବଙ୍କାଡ଼ ଗଡ଼ରେ ଅନେକ ଶିଳାଲେଖା ଇତସ୍ତତଃ ପଡ଼ିଥିବାର ମୁଁ ନିଜେ ଦେଖିଛି । ଅନେକ ଦୁର୍ମୁଲ୍ୟ ମୂର୍ତ୍ତି ଚୋରୀ ଯାଇଛି । ଅନେକ ପ୍ରସ୍ତର ଖଣ୍ଡ ଘରତିଆରି କିମ୍ବା ପୋଖରୀ ତୁଠ ନିର୍ମାଣରେ ବ୍ୟବହୃତ ହୋଇଛି । ଯଦି ସେ ସମସ୍ତ ଶିଳାଲେଖ ଗୁଡ଼ିକ ପଡାଯାଇପାରନ୍ତା, ତାହାହେଲେ "ବାଣପୁରର ଇତିକଥା" ଆହୁରି ପ୍ରମାଣସିଦ୍ଧ ଓ ସଠିକ୍ ହୋଇପାରନ୍ତା । ଡ଼ଃ ମିଶ୍ର ସେହି କାରଣରୁ ଅନନ୍ୟୋପାୟ ହୋଇ କିମ୍ବଦନ୍ତୀ, ଜନଶ୍ରୁତି ଓ ଇତିହାସକୁ ଆଧାର କରି "ବାଣପୁରର ଇତିକଥା" ରେ ବାଣପୁରର ଇତିହାସ ରଚନା କରିବାକୁ ଉଦ୍ୟମ କରିଛନ୍ତି ।

ଡ଼ଃ ମିଶ୍ର "ବାଣପୁରର ଇତିକଥା"ରେ କଙ୍ଗୋଦରେ ଶୈଳୋଦ୍ଭବ ଓ ଭୌମବଂଶର ଉତ୍ପତ୍ତି ଓ ତାହାର ବିଲୟ ପରେ କିପରି ବଙ୍କାଡ଼ ରାଜ୍ୟର ସୃଷ୍ଟି ହେଲା, ପୁଣି ବଙ୍କାଡ଼ରେ ଯଦୁରାଜ ମାନସିଂହ (୧୫୬୬-୧୬୧୪) ଠାରୁ ଶେଷ ରାଜା ହରିସେବକ ମାନସିଂହଙ୍କର (୧୭୬୯) ଶାସନ, ବଙ୍କାଡ଼ର ପତନ ପରେ କିପରି ମରହଟ୍ଟା ଓ ଇଂରେଜ ଶାସନ ବାଣପୁରରେ ପ୍ରତିଷ୍ଠିତ ହେଲା, ସେ ସମସ୍ତ ବିଷୟ ଅତି ଶୃଙ୍ଖଳିତ ଭାବରେ ବର୍ଣ୍ଣନା କରିଛନ୍ତି । ବାଣପୁରର ଧର୍ମ, ସାମାଜିକ ଜୀବନ ଶିକ୍ଷା ଓ ଶାସନ ଦିଗରେ ମଧ୍ୟ ସଠିକ ଆଲୋକପାତ କରିଛନ୍ତି ।

ବାଣପୁରର କେତେକ ଶିକ୍ଷାବିତ୍, ବାଣପୁରର ଇତିହାସ ସଂଗ୍ରହ କରିବା ଉଦ୍ୟମ ଜାରି ରଖିଛନ୍ତି । ସେମାନଙ୍କର କିଛି କିଛି ଉଦ୍ୟମ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି । ଡ଼ଃ ମିଶ୍ରଙ୍କର "ବାଣପୁର ଇତିକଥା" ସେମାନଙ୍କର ଉଦ୍ୟମକୁ ନିଶ୍ଚୟ ସହାୟକ ହେବ ।

*ଶ୍ରୀ ସୁକଲ୍ୟାଣ ପାଣିଗ୍ରାହୀ*
ଇତିହାସ ପ୍ରାଧ୍ୟାପିକ ଓ ଅଧ୍ୟକ୍ଷ
ବାଣପୁର

# ମୁଖବନ୍ଧ

ବାଲ୍ୟକାଳରୁ ମୋର ଜନ୍ମଭୂମି ବାଣପୁରକୁ ଏକ ଗୌରବମୟ ଐତିହାସିକ ସ୍ଥାନ ରୂପେ ଜାଣିଅଛି । ଏହି ପବିତ୍ର ମାଟିରେ ବହୁ ମହାମନୀଷୀ ଜନ୍ମ ନେଇ ଏ ଜାତି ଓ ରାଜ୍ୟର ଅଶେଷ କଲ୍ୟାଣ କରିଛନ୍ତି । କଳା, ସ୍ଥାପତ୍ୟ ଓ ସାହିତ୍ୟ କ୍ଷେତ୍ରରେ ସମାଜକୁ ଏହାର ଦାନ ଅତୁଳନୀୟ । ତଥାପି ଏହାର ଏକ ପୂର୍ଣ୍ଣାଙ୍ଗ ଇତିହାସ ପ୍ରକାଶିତ ହୋଇପାରିଲା ନାହିଁ । ଜୀବନର ୬ଟି ଦଶନ୍ଧି ଅତିକ୍ରମ କଲାପରେ ମଧ୍ୟ ଏହି ପବିତ୍ର ଭୂମିର ଇତିକଥା ବିଷୟରେ ପୂର୍ଣ୍ଣ ଜ୍ଞାନ ମିଳିଲା ନାହିଁ । ଆଶା ଥିଲା କେହି ଅବା କିଛି ପ୍ରକାଶ କରିବେ । ଏଥିପାଇଁ ଅତୀତରେ ଦୁଇଟି ତର୍କସଭା କରାଇ କେତେକ ଐତିହାସିକ, ଅଧ୍ୟାପକ ତଥା ଲେଖକଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା । ସମସ୍ତଙ୍କ ମୁହଁରେ ଗୋଟିଏ କଥା ପ୍ରମାଣବିନା ଇତିହାସର କଳ୍ପନା କରାଯାଇପାରେନା । ବହୁ ପୁରାତନ ସଭ୍ୟତାକୁ ମାଟିତଳୁ ଖୋଦେଇ କରି ଆଣିଲେ କେବଳ ଇତିହାସ ହୋଇପାରିବ । ତେବେ ଯେତିକି ଜନଶ୍ରୁତିରେ, କିମ୍ବଦନ୍ତୀ ତଥା ସାମାଜିକ ରୀତି ନୀତି ଭିତରେ ଏହି ସ୍ଥାନ ସମ୍ବନ୍ଧରେ ତଥ୍ୟ ମିଳୁଛି ବା କିଛି କିଛି ପୁରୁଣା ଉତ୍କଳ ଇତିହାସ ଗୁଡ଼ିକ ଭିତରୁ ଆମେ ପାଇଛେ ତାହାକୁ ଯଦି ସୁରକ୍ଷିତ କରି ରଖାନଯାଏ ତା ହେଲେ ହୁଏତ ଆମ ଭବିଷ୍ୟତ ପୀଢି ପାଇଁ ସେତିକି ମଧ୍ୟ ଦୁଷ୍ପ୍ରାପ୍ୟ ହୋଇପଡ଼ିବ । ଜନଶ୍ରୁତି, କିମ୍ବଦନ୍ତୀ ଭିତରେ ମଧ୍ୟ ଏକ ରାଜ୍ୟର ଅନେକ ଇତିହାସ ( ଅବଶ୍ୟ ପ୍ରମାଣ ସାପେକ୍ଷ ନୁହେଁ ) ବିଜଡ଼ିତ । ସେହିଗୁଡ଼ିକୁ ଆଧାର କରି ହୁଏତ ଅନେକ ବର୍ଷପରେ ଉତ୍ସାହିତ ଐତିହାସିକମାନେ ପ୍ରମାଣ ସଂଗ୍ରହ କରିପାରିବେ । ସେଗୁଡ଼ିକ ଏକବାରେ ମୂଳକ କହି ଉଡ଼ାଇଦେଲେ ସବୁଦିନ ପାଇଁ ଏକ ସ୍ଥାନର ଇତିହାସ ଅନ୍ଧକାର ଭିତରେ ହଜିଯିବ । ମୋର ବିଗତ ଦଶ/ପନ୍ଦର ବର୍ଷ ପ୍ରଚେଷ୍ଟାରେ ପାରିକୁଦ ରାଜବଂଶର ( ପୂର୍ବତନ ବଙ୍କାଡ଼ ରାଜବଂଶର ଦାୟାଦ ) କେତେକ ପୁସ୍ତକ, ସ୍ୱର୍ଗତ ରାଧାଚରଣ ପଣ୍ଡାଙ୍କ ଦ୍ୱାରା ପ୍ରକାଶିତ ତଥା ଅପ୍ରକାଶିତ କେତେକ ଲେଖା, ଏ ଅଞ୍ଚଳର ସଂସ୍କୃତଜ୍ଞ ବୟସ୍କ ବ୍ୟକ୍ତି ତଥା ଇତିହାସର ଅଧ୍ୟାପକ, କେତେକ ସାମ୍ବାଦିକ, ସାହିତ୍ୟିକ ତଥା ପ୍ରକାଶିତ କେତେକ ଓଡ଼ିଶା ଇତିହାସରୁ

ସଂଗ୍ରହ କରିଥିବା ତଥ୍ୟକୁ ନେଇ ବାଣପୁରର ଇତିକଥା ଲେଖିବା ପାଇଁ ପ୍ରୟାସ କରିଛି ।

ପ୍ରଥମେ ସ୍ୱର୍ଗତ ଡ଼ାଃ ରାଧାଚରଣ ପଣ୍ଡାଙ୍କ ଲିଖିତ ପାରିକୁଦ ବହିଟି ପଡିବାପରେ ମନେହେଲା ଆମେ ସବୁ ବାଣପୁରର ଅଧିବାସୀ ହୋଇଥିଲେ ମଧ୍ୟ ଏ ଭୂମିକୁ ନିବିଡ଼ ଭଲ ପାଇ ମଧ୍ୟ ଏହାର ଇତିକଥା ଭାବିବାକୁ ଆମକୁ ସମୟ ହେଲାନାହିଁ ଅଥଚ ଜଣେ ଏ ମାଟିକୁ ପାଦଦେଇଥିବା ଅତିଥି ଏହି ପବିତ୍ର ସାଂସ୍କୃତିକ ଭୂମି ବିଷୟରେ କିଛି ଲେଖି ଆମକୁ ଦେଇଗଲେ ଯାହାକୁ ଆଧାର କରି ମୁଁ ଅନେକ ତଥ୍ୟ ଖୋଜିବାକୁ ବାଧ୍ୟ ହେଲି । ଅନେକ ଇତିହାସ ବହିର ପୃଷ୍ଠା ପରେ ପୃଷ୍ଠା ଖୋଜି କିଛି ସାରାଶ ସଂଗ୍ରହ କଲି । ସବୁଠାରୁ ବେଶି ଆନନ୍ଦିତ ହେଲି ଯେଉଁଦିନ ତଦାନୀନ୍ତନ ରାଜାସାହେବ ପାରିକୁଦ ମୋର ଏ ପ୍ରଚେଷ୍ଟା ପାଇଁ ବହୁ ତଥ୍ୟ ଯୋଗାଇଦେବାକୁ ପ୍ରତିଶ୍ରୁତି ଦେଲେ । ତାଙ୍କ ପାଖରେ ଯାହା ଲିଖିତ ସଂଦର୍ଭ ଓ ପୋଥି ଥିଲା ସେ ତାହାକୁ କେବଳ ଯୋଗାଇ ଦେଇନଥିଲେ ବରଂ ଜଣେ ବୁଢା ବ୍ରାହ୍ମଣଙ୍କୁ ନିଯୁକ୍ତି ଦେଇ ସମସ୍ତ ତାଳପତ୍ରର ପୋଥିର ସାରାଂଶ ସବୁ ଲେଖାଇ ଦେଲେ । ଯାହା ଫଳରେ ଅନେକ କଥା ଜାଣିବାକୁ ସୁଯୋଗ ମିଳିଲା । ରାଜା ସାହେବ ଏହି ବହିଟିର ପ୍ରକାଶନ ବେଳକୁ ଯଦି ବଞ୍ଚିଥାନ୍ତେ ତାହେଲେ ସେ ହୁଏତ ସବୁଠାରୁ ଅଧିକ ଖୁସି ହୋଇପାରିଥନ୍ତେ । କିନ୍ତୁ ବିଧିର ବିଡ଼ମ୍ବନା ବିଚିତ୍ର, ସେ ଆଜି ଆମ ଗହଣରେ ନାହାନ୍ତି ।

ପ୍ରକାଶିତ ଏହି ଇତିକଥାରେ ବାଣପୁରର ଅବସ୍ଥିତି ଓ ଘଟଣାକ୍ରମ ଗୁଡ଼ିକୁ ସ୍ୱାଧୀନତାର ପ୍ରାକ୍ କାଳ ପର୍ଯ୍ୟନ୍ତ ଦର୍ଶାଯାଇଅଛି । ଏଣୁ ସ୍ୱାଧୀନତା ପରେ ପରେ ଏମାଟି ଉପରେ ବହୁ ବିଶିଷ୍ଟ ଘଟଣା ଘଟିଯାଇଛି ଓ ବହୁ ବ୍ୟକ୍ତିତ୍ୱ ଏହିଠାରେ ବିକଶିତ ହୋଇଥିଲେ ମଧ୍ୟ ତାହା ଏହି ପୁସ୍ତକରେ ବର୍ଣ୍ଣନା କରାଯାଇନାହିଁ । କାରଣ ଏହା ଖୁବ୍ ନିକଟ ଅତୀତର ଘଟଣା ହୋଇଥିବାରୁ ଏହା ପ୍ରାୟ ପ୍ରତ୍ୟେକ ଲୋକ ଜାଣନ୍ତି । ହୁଏତ ଭବିଷ୍ୟତର ନୂତନ ସଂସ୍କରଣରେ ଏହା ପରିପ୍ରକାଶ ହୋଇପାରେ । ଏପରିକି ଅନେକ ଲୋକକଥା ଓ କିମ୍ବଦନ୍ତୀକୁ ଏଥିରେ ଦର୍ଶାଯାଇନାହିଁ କାରଣ ସେଗୁଡ଼ିକର ଗୁରୁତ୍ୱ ଓ ସତ୍ୟତା ଉପରେ ଅନେକ ପ୍ରଶ୍ନବାଚୀ ରହିଛି ।

ଏହାର ଅନେକ ଅଂଶ ଜନଶ୍ରୁତି, ଲୋକକଥା କିମ୍ବଦନ୍ତୀ ଓ ପ୍ରକାଶିତ କଳିଙ୍ଗ-ଉତ୍କଳର ଇତିହାସକୁ ଆଧାର କରି କ୍ରମାନ୍ୱୟରେ ସମସ୍ତ ପରିସ୍ଥିତିକୁ ଏଥିରେ ଦର୍ଶାଯାଇଅଛି । ଏହାର ବହୁ ଅଂଶ ପ୍ରମାଣ ସାପେକ୍ଷ ଓ ହୁଏତ ଭବିଷ୍ୟତରେ ଇତିହାସର ଅନୁସନ୍ଧିତ୍ସୁ ବ୍ୟକ୍ତିମାନଙ୍କ ଅନୁସନ୍ଧାନ ପାଇଁ ସହାୟକ ହୋଇପାରେ । ନାହିଁ ମାମୁ ଠାରୁ କଣା ମାମୁ ଭଲ ଭଳି ବାଣପୁରର ଇତିକଥାରେ ଐତିହାସିକ କଙ୍ଗୋଦ ରାଜ୍ୟ ସହ ଏହାର ନିବିଡ଼ ସମ୍ପର୍କ ଓ ପରବର୍ତ୍ତୀ ବଙ୍କାଡ଼ ଗଡ଼ ସମ୍ବନ୍ଧରେ ସମ୍ୟକ୍ ଆଲୋକପାତ କରାଯାଇଅଛି । ପୌରାଣିକ ଯୁଗଠାରୁ ଆଜି ପର୍ଯ୍ୟନ୍ତ ବାଣପୁରରେ ସଂଗଠିତ ପ୍ରତ୍ୟେକ ଗୁରୁତ୍ୱପୂର୍ଣ୍ଣ ଘଟଣା ଓ ସାମାଜିକ ପରିବର୍ତ୍ତନ ଗୁଡ଼ିକୁ ପର୍ଯ୍ୟାୟକ୍ରମେ ପରିବେଶିତ କରାଯାଇଛି । ଏଥି ନିମିତ୍ତ ମୋତେ ପ୍ରେରଣା ପ୍ରଦାନ କରିଆସିଥିବା ମୋର ପରମ ପୂଜ୍ୟ ଅଜା ✓ ପ୍ରହରାଜ ପଣ୍ଡିତ ବିନାୟକ ମିଶ୍ରଙ୍କୁ ମୋର ଅନ୍ତରର କୃତଜ୍ଞତା ଜଣାଉଅଛି । ଦୁଃଖର ବିଷୟ ଏ ବହିଟି ସମ୍ପୂର୍ଣ୍ଣ ହେବା ପୂର୍ବରୁ ✓ ପ୍ରହରାଜ ଇହଧାମ ତ୍ୟାଗ କଲେ । ନଚେତ୍ ଆଜି ଏ ବହିଟି ପ୍ରକାଶିତ ହେବାରେ ସେ ପରମ ଆନନ୍ଦ ପାଇଥାଆନ୍ତେ ।

ବାଲ୍ୟକାଳରେ ଓଡ଼ିଆ ସାହିତ୍ୟର ଭାଷା, ଶୈଳି ଓ ସାହିତ୍ୟ ରଚନାତ୍ମକ ଲେଖା ଲେଖିବାକୁ ମୋର ଅଗ୍ରଜ ଶ୍ରୀଯୁକ୍ତ ନୃସିଂହଚରଣ ମିଶ୍ରଙ୍କ ପ୍ରେରଣା ଓ ମୋର ଋଷି ପ୍ରତିମ ଗୁରୁ ଶ୍ରୀ ଜଗନ୍ନାଥ ମହାପାତ୍ରଙ୍କ ସୁଶିକ୍ଷା ମୋତେ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଅଗ୍ରସର ହେବାକୁ ସୁଯୋଗ ଦେଇଅଛି । ଏଣୁ ସେମାନଙ୍କ ପାଖରେ ମୁଁ ଚିର ଋଣୀ । ଜଣେ ଚିକିତ୍ସା ବିଜ୍ଞାନର ବିଶେଷଜ୍ଞ ହିସାବରେ ମୋର ବିଜ୍ଞାନ ପ୍ରତି ଯେତେ ଅନୁରକ୍ତି ଓଡ଼ିଆ ସାହିତ୍ୟର ବିକାଶ ପାଇଁ ଠିକ୍ ସେହିଭଳି ଅନୁରକ୍ତି ରହିଅଛି । ବେଳେ, ବେଳେ ଭାବୁଛି ଅନେକ କବିତା, ଉପନ୍ୟାସ ଓ ନାଟକ ଲେଖିବି, କିନ୍ତୁ ଜଣେ ବିଶେଷଜ୍ଞ ଡ଼ାକ୍ତରର ଜଞ୍ଜାଳ ଭିତରେ ମୋର ପ୍ରାଣପ୍ରିୟ ଭାଷା ଓ ସାହିତ୍ୟର ସେବା କରିବା ପାଇଁ ସମୟ ଦେଇପାରୁନାହିଁ । ଏଣେ ବୟସ ବୃଦ୍ଧି ପାଇ ଚାଲିଛି । ଯାହାହେଉ ବାଣପୁରର ଇତିକଥାଟି ଲେଖି ମୁଁ ଅପୂର୍ବ ଆନନ୍ଦିତ । କାରଣ ଭବିଷ୍ୟତର ପିଢି ଏହାରି ଉପରେ ଇତିହାସର ସୌଧ ନିର୍ମାଣ କରିପାରିବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । କଳା, ସଂସ୍କୃତି ଓ ସାହିତ୍ୟର ପୂଜାରୀ ତଥା ଜଣେ ସଚ୍ଚୋଟ ଜନସେବକ ସ୍ୱାଭିମାନର ସଂପାଦକ

ସତ୍ୟାନନ୍ଦ ଚମ୍ପତିରାୟ୍ ଓ ମୋର ବନ୍ଧୁ ଇତିହାସ ଅଧ୍ୟାପକ ଅଧ୍ୟକ୍ଷ ସୁକଲ୍ୟାଣ ପାଣିଗ୍ରାହୀ ଏଥିରେ ତାଙ୍କର ମୂଲ୍ୟବାନ୍ ଅଭିମତ ଦେଇଥିବାରୁ ମୁଁ ସେମାନଙ୍କ ଠାରେ କୃତଜ୍ଞ । ସେହିଭଳି ରାଧାଚରଣ ପଣ୍ଡାଙ୍କ ସୁଯୋଗ୍ୟ ପୁତ୍ର ସ୍ୱାଧୀନ ପଣ୍ଡା କଣେ ପାଠକ ହିସାବରେ ମତାମତ ଦେଇଥିବାରୁ ମୁଁ ଆନନ୍ଦିତ ।

ମୋର ଧର୍ମପତ୍ନୀ ଶ୍ରୀମତୀ ରେଣୁବାଳା ମିଶ୍ର ଯାହାଙ୍କ ସାହାଯ୍ୟ, ସହଯୋଗ ଓ ପ୍ରେରଣା ମତେ ଏ ସମାଜରେ ଆଗେଇ ଯିବାକୁ ସୁଯୋଗ ଦେଇଛି, ସେ ଏ ବହିଟି ପ୍ରକାଶ କରିବାକୁ ଆଗଭର ହୋଇଥିବାରୁ ମୁଁ ତାଙ୍କୁ ମୋର ଅନ୍ତରର ଧନ୍ୟବାଦ ଅର୍ପଣ କରୁଛି । ପରିଶେଷରେ ବହିଟିରେ ଥିବା ଭୁଲ ବା ମୋର ଅଗୋଚରରେ ଅପ୍ରକାଶିତ ରହିଯାଇଥିବା କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣା ପାଇଁ ପାଠକମାନେ କ୍ଷମାଦେବେ ବୋଲି ଅନୁରୋଧ ।

**ଡ଼ାଃ ଦିବ୍ୟସିଂହ ମିଶ୍ର**

ଭେଷଜ ବିଶେଷଜ୍ଞ

ଅଶୋକ ନଗର, ବାଲୁଗାଁ

# ଅଭିମତ

ବାଣପୁରର ଗୌରବୋଜ୍ଜଳ ଇତିହାସ ଏବେ ଲୋକଲୋଚନର ଅନ୍ତରାଳରେ ରହିଅଛି । କଳା, ସ୍ଥାପତ୍ୟ କ୍ଷେତ୍ରକୁ ଏହାର ଦାନର ପଟ୍ଟାନ୍ତର ନାହିଁ । ଇତିହାସ ସାଧାରଣତଃ ବୈଜ୍ଞାନିକ ପ୍ରମାଣିକ ତଥ୍ୟ ଉପରେ ନିର୍ଭର କରିଥାଏ । କୌଣସି ଲୋକକଥା ବା ପୁରାଣକୁ ଭିତ୍ତିକରି ଇତିହାସ ହୁଏ ନାହିଁ । ତେଣୁ ବାଣପୁର ଇତିହାସ ପୃଷ୍ଠାର କଙ୍ଗୋଦର ଶାଳିମା ନଗରୀ, ଘଣ୍ଟଶିଳା, ବଙ୍କାଡ଼ ଗଡ଼, ଭାଲେରୀ, ଶୋଲରୀ, ନିଳାଦ୍ରୀପ୍ରସାଦ, ରଙ୍ଗନାଥ ଦେବ, ମା' ଭଗବତୀ, ଦକ୍ଷପ୍ରଜାପତି ଚିରକାଳ ଜାଜ୍ଜ୍ୱଲ୍ୟମାନ ହୋଇ ରହିବ । ଏହା କିପରି କାଳର ଅବକ୍ଷୟକୁ ଖାତିର ନକରି ଏ ପର୍ଯ୍ୟନ୍ତ ତିଷ୍ଠି ରହିଛନ୍ତି ତାହାହିଁ ଜାଣିବାପାଇଁ ଅଧିକ ତଥ୍ୟ ଆବଶ୍ୟକ ।

ବାଣପୁରକୁ ପୌରାଣିକ ଦୃଷ୍ଟିକୋଣକୁ ଦେଖି ବାଣାସୁର ରାଜ୍ୟଥିଲା ବୋଲି କହି କେହି କହନ୍ତି । ଏହାର ରାଜଧାନୀ ବର୍ତ୍ତମାନ ଗୋଦାବରୀଶ ମହାବିଦ୍ୟାଳୟ ପାର୍ଶ୍ୱବର୍ତ୍ତି ଅଞ୍ଚଳ ଥିଲା । ଏଠାରୁ ଏକ ରାସ୍ତା ଭାଲେରୀ ତାରିଣୀ ମନ୍ଦିର ପର୍ଯ୍ୟନ୍ତ ଅଦ୍ୟାବଧି ରହିଅଛି । ଏହାର ନାମ ବାଣାସୁର ହୁଡ଼ା । ଏହି ବାଟ ଦେଇ ବାଣାସୁର ମା' ତାରିଣୀ ଓ ମା' ନାରାୟଣୀ ଦର୍ଶନ ପାଇଁ ପ୍ରତ୍ୟେକ ଦିନ ଯାଆନ୍ତି ବୋଲି ଶୁଣାଯାଏ । ଏହାର ଆହୁରି ଅନୁଧ୍ୟାନ ହେବା ଆବଶ୍ୟକ । ବାଣପୁର ଏକ ସମୃଦ୍ଧଶାଳୀ ରାଜ୍ୟ । ଏହାର ପୂର୍ବତଟଦେଶରେ ନୀଳାମ୍ବୁ ଚିଲିକା, ନୌବାଣିଜ୍ୟର ପ୍ରତୀକ ମଧ୍ୟ ଦେଶରେ ନଦୀ ଶାଳିଆ ଯେ ଶସ୍ୟ ଶ୍ୟାମଳାର ପ୍ରତୀକ, ଏହାର ପଶ୍ଚିମରେ ସୁବିସ୍ତିର୍ଣ୍ଣସବୁଜ ଶାଳର ଅରଣ୍ୟ ଏହାର ଜନପଦ ପାଇକମାନଙ୍କର ସମରକଳାରେ ପ୍ରସିଦ୍ଧ ଏବଂ ବ୍ରାହ୍ମଣ ଶାସନ କର୍ମକାଣ୍ଡ ପାଇଁ ଉତ୍କର୍ଷ ଲାଭ କରିଥିଲା । ଏହାର ଇତିହାସ ସଠିକ୍ ରୂପାୟନ ଏପର୍ଯ୍ୟନ୍ତ ହୋଇନାହିଁ ।

ଏତ ଗଲା ପ୍ରାକ୍ ବ୍ରିଟିଶ ଶାସନ କଥା । ୧୮୧୭ରେ ବାଣପୁରକୁ ବହୁ ପ୍ରତିରୋଧ ପରେ ଇଂରେଜ ଅକ୍ତିଆର କଲା ଏବଂ ବହୁ ପାଇକ, ଦଳେଇ,

ଦଳବେହେରାଙ୍କୁ କ୍ଷତବିକ୍ଷତ କଲା । ଯାହାଫଳରେ ସେମାନେ ଆତ୍ମଗୋପନ କରିଥିଲେ । ଏବଂ ସମୟ ଦେଖି ଏହାର ପ୍ରତିରୋଧ ନେବାପାଇଁ ଚେଷ୍ଟା କରୁଥିଲେ ।

୧୮୩୬ ମସିହା ଜୁନ୍ ୪ ତାରିଖରେ ପୁଣି ଥରେ ବିଦ୍ରୋହ ଘୋଷଣା କଲେ ଅରାଙ୍ଗ ଦଳବେହେରା କୃତ୍ତିବାସ ପାଟ୍ଟଶାଣୀ । ସେ ବାଣପୁରର ବିଭିନ୍ନ ପାଇକ ବୀର ଓ କନ୍ଧ ମାନଙ୍କୁ ଧରି ବାଣପୁର ମାଟିକୁ ସ୍ୱାଧୀନ କରିବାପାଇଁ ବିଦ୍ରୋହ ଆରମ୍ଭ କରିଦେଲେ । ବାଣପୁର ୩ଦିନ ପାଇଁ ସ୍ୱାଧୀନ ହେଲା । ଏହା କ୍ଷୁଦ୍ର ହୋଇପାରେ ମାତ୍ର ଏହାକୁ ପ୍ରଥମ ସ୍ୱାଧୀନତା ସଂଗ୍ରାମର ନାମ ଦେବା ଆବଶ୍ୟକତା ରହିଅଛି । ଏହି ବିଦ୍ରୋହ ଧ୍ୱନି ଏତେ ଉଗ୍ର ଥିଲା ଯେ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ଥିବା ବ୍ରିଟିଶ ବାହିନୀ ବାଣପୁର ଅଞ୍ଚଳ ନୁହଁ, ଖୋର୍ଦ୍ଧା ଅଞ୍ଚଳରୁ ମଧ୍ୟ ଛାଡ଼ି ପଳାଇଥିଲେ । ଜଣେ ବ୍ରିଟିଶ ଅଫିସର ସରକାରୀ ରେକର୍ଡରେ ଲେଖିଛନ୍ତି " Their success at Banpur had set whole country in arm against us and seeing the hopelessness of resistance the whole Government officers stationed at Khurda sought safely in precipate fight."

ଏହି ତଥ୍ୟକୁ ଭିତ୍ତିକରି ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ତାରିଖ ବଦଳାଯିବା ଦରକାର । "ବାଣପୁର ଇତିହାସ-ସଂକଳନ" ଏଣର୍ଯ୍ୟନ୍ତ ହୋଇନଥିବା ଆଉ କ୍ଷୋଭର ବିଷୟ ହୋଇ ରହିନାହିଁ । ଏହାର ଏକ ସୁନ୍ଦର ତଥ୍ୟପୂର୍ଣ୍ଣ ଭିତ୍ତିଭୂମି ପ୍ରସ୍ତୁତ କରି ଦିବ୍ୟସିଂହ ମିଶ୍ର ବାଣପୁର ତଥା ଓଡ଼ିଶାର ଇତିହାସ ଗବେଷକ ଙ୍କର ଧନ୍ୟବାଦ ପାତ୍ର ହୋଇ ପାରିଛନ୍ତି । ଡ଼କ୍ଟର ମିଶ୍ରଙ୍କର ବୃତ୍ତି ଜନସେବା ଓ ଲୋକକଲ୍ୟାଣ, ତଥାପି ବାଣପୁର ଅତୀତ ଐତିହାସିକ ସ୍ମୃତିକୁ ସାଉଁଟିବା ପାଇଁ ଯେଉଁ ପ୍ରବୃତ୍ତି ପ୍ରକାଶ କରିଛନ୍ତି ତାହାକୁ ଯେ କୌଣସି ଲୋକ ଆଦର କରିବା କଥା । ବହିଟି ନିଶ୍ଚିତ ତଥ୍ୟପୂର୍ଣ୍ଣ ଓ ଭାବଉଦ୍ଦୀପକ । ଏ ପୁସ୍ତକଟି ପାଠକଙ୍କ ଦ୍ୱାରା ନିଶ୍ଚିତ ଆଦୃତ ଓ ଗୃହୀତ ହେବାର ଆଶା ରଖୁଛି ।

ସତ୍ୟନନ୍ଦ ଚମ୍ପତିରାଏ
ପୂର୍ବତନ ଏମ୍.ଏଲ୍.ଏ

# ଜଣେ ପାଠକଙ୍କ ମତ

୧୯୨୮ ମସିହାରେ ସ୍ୱର୍ଗତ ଡ଼ାକ୍ତର ରାଧାଚରଣ ପଣ୍ଡା ପାରିକୁଦରେ ଜଣେ ସରକାରୀ ଡ଼ାକ୍ତର ଭାବେ ଅବସ୍ଥାନ କାଳରେ ସ୍ଥାନୀୟ ଇତିହାସ ଅନୁସନ୍ଧାନ କରି ପାରିକୁଦ ତଥା ବାଣପୁର ରାଜବଂଶର ଇତିହାସ ପୁସ୍ତକ "ପାରିକୁଦ" ତାଙ୍କର ଏକ ଅମୂଲ୍ୟ ଅବଦାନ ।

ସେହିପରି ଏବେ ନିଜ ଜନ୍ମମାଟିର ଇତିହାସ ସଂଗ୍ରହ ପାଇଁ ଗଭୀର ଅନୁସନ୍ଧିତ୍ସା ନେଇ ଡ଼ାକ୍ତର ଦିବ୍ୟସିଂହ ମିଶ୍ର ଯେଉଁ ଅକ୍ଲାନ୍ତ ପରିଶ୍ରମ କରିଛନ୍ତି ଏହା ବାସ୍ତବିକ୍ ପ୍ରଶଂସନୀୟ । ଏବେର ଓ ଭବିଷ୍ୟତର ବଂଶଧର ଯେଉଁ ମାନେକି ନିଜ ଅଞ୍ଚଳର ଗୌରବମୟ ଅତୀତକୁ ଜାଣନ୍ତି ନାହିଁ ସେମାନେ ବହୁ ତଥ୍ୟ "ବାଣପୁର ଇତିକଥା" ରୁ ପାଇପାରିବେ ।

ଏହି ବୀର ଭୂମିର ଅଧିବାସୀ ଗଣ ତଥା ଇତିହାସ ପ୍ରେମୀ, ଅତୀତକୁ ଜାଣିବା ପାଇଁ ଯେଉଁ ବ୍ୟାକୁଳତା ମଧ୍ୟରେ ଥିଲେ ଏହି ପୁସ୍ତକ ନିଶ୍ଚିତ ଭାବେ ସେମାନଙ୍କର ଆବଶ୍ୟକତା ପୂରଣ କରିବ ।

ସ୍ୱାଧୀନ କୁମାର ପଣ୍ଡା
ବାଲୁଗାଁ, ଖୋର୍ଦ୍ଧା

# ସୂଚୀପତ୍ର

# କଳିଙ୍ଗ ଓ କଙ୍ଗୋଦର ଭିତ୍ତିଭୂମି

ଅତି ପୁରାତନ ଇତିହାସ ଜାଣିବାକୁ ହେଲେ ପୁରାତନ ବୈଦିକ ଶାସ୍ତ୍ର, ପୁରାଣ ଓ ବୌଦ୍ଧଜାତକ ମାନଙ୍କ ଉପରେ ନିର୍ଭର କରିବାକୁ ହୁଏ । ବୈଦିକ ସାହିତ୍ୟରେ କଳିଙ୍ଗ, ଓଡ୍ର ବା ଉତ୍କଳର ନାମ ମିଳେ ନାହିଁ । କିନ୍ତୁ ଖ୍ରୀ.ଅ ୩ହଜାରରୁ ୨ହଜାର ଭିତରେ ଲିଖିତ ବ୍ରାହ୍ମଣ ସାହିତ୍ୟ ଯୁଗରେ ଲିଖିତ ଐତ୍ରେୟ ବ୍ରାହ୍ମଣରେ କଳିଙ୍ଗ ନାମ ମିଳେ ।

ତାହାପରେ ମହାଭାରତ ଖ୍ରୀ.ପୂ. ୧୧୦୦ ଶତାବ୍ଦୀରେ ଲେଖା ଗଲାବେଳେ କଳିଙ୍ଗ ରାଜ୍ୟର ରାଜଧାନୀ ରାଜପୁରୀ ଥିଲା ଓ ଏହି ରାଜପୁରୀରେ ଚିତ୍ରାଙ୍ଗଦାଙ୍କ ସ୍ୱୟମ୍ବର ହୋଇଥିଲା । ଯେଉଁଠାରେ କର୍ଣ୍ଣ, ଦୁର୍ଯ୍ୟୋଧନ, ଜରାସନ୍ଧ, ଅର୍ଜ୍ଜୁନ ପ୍ରଭୃତି ମହା, ମହାବୀର ଉପସ୍ଥିତ ଥିଲେ ବୋଲି ସ୍ୱୀକୃତ । ଶତାୟୁ ନାମକ କଳିଙ୍ଗ ରାଜା କୁରୁ ପାଣ୍ଡବ ଯୁଦ୍ଧରେ ଦ୍ରୋଣଙ୍କ ସହ ମିଶି ଲଢିଥିଲେ । ସେ ଏକ ବିଶାଳ ଅଶ୍ୱାରୋହୀ ଓ ହସ୍ତୀବାହି ରଥ ନେଇ କୁରୁକ୍ଷେତ୍ରରେ ଯୋଗ ଦେଇଥିଲେ । ସେହିଭଳି ଅର୍ଜ୍ଜୁନ ଓ ପରେ ଯୁଧିଷ୍ଠିର କଳିଙ୍ଗର ସମସ୍ତ ତୀର୍ଥ ସ୍ଥାନ ଭ୍ରମଣ କରିଥିଲେ । ଏଥିରେ ମଧ୍ୟ କୁହାଯାଇଛି କଳିଙ୍ଗ ରାଜା କୌରବ ପକ୍ଷରେ ଥିଲେ ମଧ୍ୟ ଓଡ୍ର ଦେଶର ( ଉତ୍କଳ ) ରାଜାମାନେ ପାଣ୍ଡବ ପକ୍ଷରେ ଥିଲେ ।

ସେହିଭଳି ବୌଦ୍ଧଜାତକ ଓ ଜୈନଗ୍ରନ୍ଥ ଖ୍ରୀ.ପୂ ୬ଷ୍ଠ ବା ୭ମ ଶତାବ୍ଦୀରେ ଲେଖାଯାଇଥିଲା, ସେହି ଅନୁସାରେ କଳିଙ୍ଗର ରାଜଧାନୀ ଦନ୍ତପୁର ଥିଲା । ଥରେ ଦୁର୍ଭିକ୍ଷ ପଡ଼ିବାରୁ ଦନ୍ତପୁର ରାଜା କୁରୁ ରାଜାଙ୍କର ଅଞ୍ଜନ ବାସବ ନାମକ ଏକ ଧଳା ହସ୍ତୀକୁ ଅଣାଇଥିବାରୁ ଏହି ରାଜ୍ୟ ଦୁର୍ଭିକ୍ଷରୁ ରକ୍ଷା ପାଇଥିଲା ।

କଳିଙ୍ଗ ବୌଦ୍ଧଜାତକରେ କଳିଙ୍ଗ ରାଜାଙ୍କର ପୁତ୍ର ଦିନେ ଚକ୍ରବର୍ତ୍ତୀ ହେବ ବୋଲି ଜ୍ୟୋତିଷ କହିଥିବାରୁ ଚୁଲ୍ଲକଳିଙ୍ଗ ( ରାଜପୁତ୍ର ) ବଡ଼ଭାଇଙ୍କ ଦ୍ୱାରା ନିର୍ବାସିତ ହେଲେ ଓ ତାଙ୍କର ପୁତ୍ର କଳିଙ୍ଗର ରାଜଚକ୍ରବର୍ତ୍ତୀ ହୋଇଥିଲେ ।

ସେହିଭଳି ବୌଦ୍ଧଜାତକରୁ ଉଦ୍ଧୃତଯେ ବୁଦ୍ଧଙ୍କ ନିର୍ବାଣ ପରେ ଯେଉଁକାଗାରେ ତାଙ୍କର ଏକ ଦନ୍ତକୁ ରଖି ତା ଉପରେ ସ୍ତୁପ ନିର୍ମାଣ କରି କଳିଙ୍ଗ ରାଜା ପୂଜା କରାଇଥିଲେ ତାହାକୁ ଦନ୍ତପୁର କୁହାଗଲା ।

ଏଥିରେ ମଧ୍ୟ କୁହାଯାଇଛି ଯେ, ତତ୍କାଳୀନ କଳିଙ୍ଗ ରାଜବଂଶର ଭାଇ, ବିରାଦରମାନଙ୍କ ମନାନ୍ତର ହୋଇ ( ମହାନନ୍ଦଙ୍କ ରାଜୁତି ସମୟରେ ) କଳିଙ୍ଗରୁ କଙ୍ଗୋଦ ସୃଷ୍ଟି ହେଲା ଓ ଏହା ପୁରୀର ଦକ୍ଷିଣାଞ୍ଚଳ ଓ ଗଞ୍ଜାମ ଜିଲ୍ଲାକୁ ନେଇ ଗଠିତ ହୋଇଥିଲା । ଏହି କଙ୍ଗୋଦ ରାଜ୍ୟରେ ଦନ୍ତପୁର ଥିଲା ।

## ପୌରାଣିକ ଯୁଗରେ ବାଣପୁରର ସ୍ଥାନ

ବାଣପୁର ଅଞ୍ଚଳର ଭୌଗୋଳିକ ସୀମା ପ୍ରାଚୀନ କାଳରେ ପୂର୍ବରେ ନୀଳାମ୍ବୁଚିଲିକାର ଜଳରାଶି ପଶ୍ଚିମରେ ସବୁଜିମାଭରା, ସୌନ୍ଦର୍ଯ୍ୟଭରା ମୂଲ୍ୟବାନ ଜଙ୍ଗଲ ଓ ଦକ୍ଷିଣରେ ଭାଲେରୀ ଓ ଉତ୍ତରରେ ବିସ୍ତୀର୍ଣ୍ଣ ସମତଳଭୂମି ଘେରି ରହିଥିଲା । ପ୍ରବାଦ ଅଛି, ଚିଲିକା ଦିନେ ଭୀମପୁର, ଧୂଆଁଳି ଗୋପୀନାଥପୁର, ଅଲାଇଡ଼ିହ ପର୍ଯ୍ୟନ୍ତ ବିସ୍ତୃତ ରହିଥିଲା । ରଣପୁର, ଓଡ଼ଗାଁ, ଆଠଗଡ଼, ବୁଗୁଡ଼ା, ଖଲ୍ଲିକୋଟ, ରମ୍ଭା ଓ ଭୁଷଣ୍ଡପୁର ଏହି ଅଞ୍ଚଳର ଅର୍ନ୍ତଗତ ଥିଲା । ବର୍ତ୍ତମାନ ଯାଇଥିବା ଜାତୀୟ ରାଜପଥ ପର୍ଯ୍ୟନ୍ତ ଚିଲିକାର ବିସ୍ତୀର୍ଣ୍ଣ ଜଳରାଶି ଘେରି ରହିଥିଲା । ପଶ୍ଚିମରେ ଏହି ବିରାଟ ମାଳଭୂମି ଅଞ୍ଚଳ ଭିତରେ ଯେଉଁସବୁ ସମତଳ ଅଞ୍ଚଳ ଥିଲା ସେହିଠାରେ ଜନବସତି କାଳକ୍ରମେ ଗଢି ଉଠିଲା । ଲୋକମାନେ ସାଧାରଣତଃ ଶବର ଜାତିର ଓ ଦ୍ରାବିଡ଼ ଜାତିର ଥିଲେ ଓ ପଶୁ ଶିକାର, ଜଙ୍ଗଲୀ ଫଳମୂଳ ସଂଗ୍ରହ ଓ ମାଛ ଧରିବା, ମୁଖ୍ୟ ଜୀବିକା ଥିଲା । ସମୟକ୍ରମେ କୃଷିର ବିକାଶ ଘଟିଲା ଓ କେତେକ ଉଚ୍ଚବର୍ଗର ( ଆର୍ଯ୍ୟ ସଂପ୍ରଦାୟ ) ବୁଦ୍ଧିମାନ୍ ଲୋକେ ସମତଳ ଅଞ୍ଚଳକୁ କୃଷିକାର୍ଯ୍ୟରେ ନିୟୋଜିତ କରାଇଲେ । ଏହି ଭଳି ଭାବରେ ବସ୍ତି ପରେ ବସ୍ତି ଗଢି ଉଠିବାର ସଙ୍ଗେସଙ୍ଗେ ଗ୍ରାମ ସବୁ ସୃଷ୍ଟି ହୋଇଥିବାର ଅନୁମାନ କରାଯାଏ ।

ବାଣାସୁର ରାଜ୍ୟ ବୋଲି ବାଣପୁର ହୋଇଥିବା କଥା ଅନେକ କିମ୍ବଦନ୍ତୀ ଥିଲେ ମଧ୍ୟ ଏହାକୁ ସମ୍ପୂର୍ଣ୍ଣ ଭାବେ ଗ୍ରହଣ କରିହେବ ନାହିଁ । ପୁରାଣ ବର୍ଣ୍ଣିତ ବାଣାସୁର ଝିଅ ଉଷାର ଉପାଖ୍ୟାନ ନେଇ ଅନେକ ପ୍ରବାଦ ଏଠାରେ ମିଳେ । ବାଣାସୁରର ପ୍ରବଳ ପ୍ରତାପ ଦିନେ ପୃଥିବୀ ପ୍ରକମ୍ପିତ କରୁଥିବାର ପୁରାଣ କହେ । କିନ୍ତୁ ସେହି ପୁରାଣ ବର୍ଣ୍ଣିତ ବାଣାସୁରର ଗାଥା ଉତ୍ତରଭାରତର ଏକ ପ୍ରଚଳିତ କାହାଣୀ ଅଟେ ।ଏଣୁ ଏହି କାହାଣୀକୁ ଏଠାରେ ଉପସ୍ଥାପନା କରିବା ଉଚିତ

ମନେ ହୁଏନାହିଁ । ଏଠାରେ ମଧ୍ୟ ବାଣାସୁରର ଶୋଣିତ ନଗରକୁ ଆଜିର ସୋରଣ ବୋଲି କହିବା ଅଯଥାର୍ଥ। ବାଣାସୁର ଘଣ୍ଟଶିଳାରେ ଘଣ୍ଟ ରଖି ସୈନ୍ୟଚାଳନା କରିବା ଓ ବାଣାସୁର ହୁଡ଼ା ଦେଇ ଭାଲେରୀକୁ ଯାଇ ନାରାୟଣୀ ଉପାସନା କରିବା କଥା କେତେଦୁର ସତ୍ୟ ତାହା ଆଜି କହିବା ଦୁରୂହ ବ୍ୟାପାର। ଖଣ୍ଡାହଣା ପାହାଡ଼ର ବାଣାସୁର ଖଣ୍ଡାର ଧାର ସଦୃଶ ଏକ ଅଂଶ ବୋଲି ଆଜି ଯେଉଁ କଥା ଲୋକମୁଖରେ ପ୍ରଚାରିତ ତାହା ମଧ୍ୟ ମୂଳକ ମନେହୁଏ ।

ତେବେ ଏତିକି କୁହାଯାଇପାରେ ଯେ, ହୁଏତ ବାଣାସୁର ନାମରେ ଜଣେ ପ୍ରବଳପ୍ରତାପୀ ବ୍ୟକ୍ତି ଏହି ଅଞ୍ଚଳରେ ରାଜୁତି କରୁଥିବେ ଯାହାଙ୍କୁ ଆଧାର କରି ଏଭଳି କିମ୍ବଦନ୍ତୀ ଥାଇପାରେ ।

କେତେକ କୁହନ୍ତି, ରାମାୟଣର ରାମଚନ୍ଦ୍ର ଓ ଲକ୍ଷ୍ମଣ ଏହି ପଥଦେଇ ଗଲାବେଳେ ବାଣମାରି ଅନେକ ଦୁଷ୍ଟ ପ୍ରକୃତିର ଅସୁରମାନଙ୍କୁ ନିପାତ କରିଥିବାରୁ ଏହାର ନାମ ବାଣପୁର ହୋଇଥିଲା । ତ୍ରେତେୟ଼ା ଯୁଗରେ ରାବଣ ସୀତାଙ୍କୁ ପୁଷ୍ପକ ବିମାନରେ ଅପହରଣ କରି ନେବାବେଳେ କ୍ରନ୍ଦନରତ ସୀତାଙ୍କ ଅବିଶ୍ରାନ୍ତ ଲୋତକଧାରା ପତିତ ହୋଇ ମାମୁଁଭଣଜା ପାହାଡ଼ ଉପରେ ଏକ କ୍ଷୁଦ୍ର ଜଳାଶୟ ସୃଷ୍ଟି ହୋଇଥିଲା। ଯାହାକୁ ଏବେ ସୀତାକୁଣ୍ଡ କୁହାଯାଏ । ଏହା କେବଳ କିମ୍ବଦନ୍ତୀ ଅଟେ। ଏଥିରେ ସତ୍ୟତା ଥିବାଭଳି ପ୍ରତୀୟମାନ ହୁଏ ନାହିଁ ।

ଆଜିର କାଛମାଳ ଅଞ୍ଚଳ ଯଥା ବାଣପୁର ପ୍ରତାପ ରାସ୍ତାର ଦକ୍ଷିଣକୁ ଥିବା ସମସ୍ତ ଅଞ୍ଚଳରେ ଦିନେ କନ୍ଧସୌରା ଜାତିର ଆଦିବାସୀ ଲୋକମାନେ ରହୁଥିଲେ । ଏବେ ମଧ୍ୟ ସେହିନାମରେ କନ୍ଧ ଦୁଲଣୀ ମୌଜା ରାଜସ୍ୱବିଭାଗର ଖାତାପତ୍ରରେ ରହି ଆସିଛି । ଗୋଦାବରୀଶ ମହାବିଦ୍ୟାଳୟ ନିର୍ମାଣ ହୋଇଥିବା ସ୍ଥାନରେ ସେହି ଆଦିବାସୀମାନଙ୍କ ଦେବୀ ଜେନାଭୂଐଁ ଥିବାର ଏବେମଧ୍ୟ ସମସ୍ତେ ଜାଣିଛନ୍ତି । ଆଜିକୁ ୫୦ବର୍ଷ ତଳେ ପ୍ରତିଦିନ ମାଳ ଅଞ୍ଚଳରୁ ଜଣେ

କନ୍ଧ ଜାତିର ପୂଜକ ଆସି ଏହି ଦେବୀ କେନାଭୂଯାଁ ଦେବୀଙ୍କୁ ପୂଜା କରୁଥିବାର ପ୍ରାୟ ସର୍ବଜନ ବିଦିତ । ଚିଲିକାର ଅବସ୍ଥିତି ସେତେବେଳେ ଗୋପୀନାଥପୁର, ଭୀମପୁର ପର୍ଯ୍ୟନ୍ତ ଥିବାର ଅନୁମିତ ହୁଏ । ଗୋପୀନାଥପୁରରେ ଥିବା ବୋଇତହୁଡ଼ା ଆଜି ତାହାର ମୂକସାକ୍ଷୀ । ହୁଏତ ଏହି କଙ୍ଗୋଦାଧିପତିଙ୍କର ବାଣିଜ୍ୟପୋତ ଚିଲିକା ବକ୍ଷରେ ଯାତାୟତ କରୁଥିଲା । ଭୀମପୁର, ବିଷରପାଟଣା ଓ ବାଣପୁର ଅଞ୍ଚଳର ତିଅର ସାହିଗୁଡ଼ିକ ସେହି ଦୃଷ୍ଟିରୁ ଅତି ପ୍ରାଚୀନ ମନେହୁଏ । ଏହିମାନେ ସେତେବେଳେ ଚିଲିକାରେ ଅବାଧ ମତ୍ସ୍ୟ ଶିକାର କରି ଜୀବିକା ନିର୍ବାହ କରୁଥିବାର ଅନୁମିତ ହୁଏ । କାଳକ୍ରମେ ଚିଲିକାର କାୟା ସଂକୁଚିତ ହେବାପରେ ଏହି ସବୁ କୈବର୍ତ୍ତ ବସ୍ତିରୁ ତିଅରମାନେ ଚିଲିକା କୂଳକୁ ସ୍ଥାନାନ୍ତରିତ ହୋଇ ବସତି ସ୍ଥାପନ କରିଥିବାର ଅନୁମାନ କରାଯାଏ ।

ତତ୍କାଳୀନ ଅଧିବାସୀମାନେ ସ୍ତମ୍ଭାକାର କାଠ ପ୍ରତିମାକୁ ପୂଜା କରୁଥିବାର ଅନୁମାନ କରାଯାଏ । ସାଧାରଣ ବେଶପୋଷାକ ମଧ୍ୟରେ କଉପୁନି ପିନ୍ଧା ମଣିଷମାନେ ବୋଧହୁଏ ବିଶେଷ ଭାବରେ ପରିଲକ୍ଷିତ ହେଉଥିଲେ । ଆଜିର ଆଦିବାସୀ ରମଣୀ ଭଳି ସ୍ତ୍ରୀ ଲୋକମାନେ ବିଭିନ୍ନ ରଙ୍ଗ-ବେରଙ୍ଗର କାଇଁଚମାଳ ପିନ୍ଧୁଥିବାର ଅନୁମିତ ହୁଏ । ବହୁ ପୁରାତନ ପଥର ମୂର୍ତ୍ତିଗୁଡ଼ିକ ଏହାର ପ୍ରମାଣ ହୋଇପାରେ ।

ପଶୁ ଶିକାର ଓ ମତ୍ସ୍ୟ ସଂଗ୍ରହ କରି ତତ୍କାଳୀତ ଅଧିବାସୀମାନେ ଏଠାରେ ଜୀବିକା ନିର୍ବାହ କରୁଥିଲେ ।

ମୁଖ୍ୟତଃ ବାଣପୁର ଅଞ୍ଚଳ ତତ୍କାଳୀନ କଙ୍ଗୋଦରାଜ୍ୟର ରାଜଧାନୀ ଥିବାର ଅନୁମାନ କରାଯାଏ । ଏହାର ସମ୍ପର୍କ ଦନ୍ତପୁର ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିଲା- ଏଥିରେ ସନ୍ଦେହ ନାହିଁ । ହୁଏତ ତତ୍କାଳୀନ କଙ୍ଗୋଦାଧିପତି ରାଜ୍ୟର ସୁଶାସନ ଓ ସୁରକ୍ଷା ପାଇଁ ଦୁଇଟି ସ୍ଥାନରେ ରାଜଧାନୀ ନିର୍ମାଣ କରିଥିଲେ ।

# ମହାଭାରତ ଯୁଦ୍ଧ ପରେ କଳିଙ୍ଗ ଓ କଙ୍ଗୋଦର ସ୍ଥିତି

ମହାଭାରତ ଯୁଦ୍ଧରେ କଳିଙ୍ଗ ରାଜା ଶକୁନିଙ୍କୁ ସାହାଯ୍ୟ କରିଥିବାର ମହାଭାରତପୁରାଣରେ ଦର୍ଶାଯାଇଛି ।ଏହି ରାଜ୍ୟର ରାଜକନ୍ୟା ଆକ୍ରୋଧନ ତ୍ରିଶଙ୍କୁଙ୍କୁ ବିବାହ କରିଥିବାର ମଧ୍ୟ ବର୍ଣ୍ଣନା କରାଯାଇଛି । ତେବେ ଏହି ବର୍ଣ୍ଣିତ କଳିଙ୍ଗ ରାଜା ଯେ କଳିଙ୍ଗାଧିପତି ତାହା ପ୍ରମାଣ ସାପେକ୍ଷ । ସେତେବେଳେ କଳିଙ୍ଗର ଭୌଗୋଳିକ ଅବସ୍ଥାନ ମଧ୍ୟ ନିର୍ଦ୍ଦିଷ୍ଟ ଭାବେ ନିରୂପଣ କରାଇବା କଠିନ । ସେହିଭଳି ଅନ୍ୟକେତେକ ପୌରାଣିକ ତଥ୍ୟକୁ ନେଇ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ବଳିରାଜାଙ୍କ ପତ୍ନୀ ସୂଦର୍ଷ୍ଣାଙ୍କ ଗର୍ଭରୁ ପାଞ୍ଚଟି ପୁତ୍ର ଜାତ ହୋଇଥିଲେ । ସେମାନଙ୍କ ନାମଥିଲା ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ, ଓ ସୁହ୍ମ । ଏହି ପୁତ୍ରମାନେ ଯେଉଁ,ଯେଉଁ ରାଜ୍ୟରେ ଶାସନକଲେ ସେହି ରାଜ୍ୟର ନାମ ସେହିପରି ହେଲା । କଳିଙ୍ଗ ଶାସନ କରିଥିବା ରାଜ୍ୟ କଳିଙ୍ଗ ଅଟେ ଓ ଏହା ଗୋଦାବରୀଠାରୁ ଗଙ୍ଗାନଦୀ ପର୍ଯ୍ୟନ୍ତ ବ୍ୟାପୃତ ଥିଲା । କାଳକ୍ରମେ ଏହା ବିଭକ୍ତ ହୋଇ ଏହିଥିରୁ କଙ୍ଗୋଦରାଜ୍ୟର ସୃଷ୍ଟି ହେଲା ।

ତେବେ ଏହା ନିଶ୍ଚିତ ଅଟେ ଯେ କଳିଙ୍ଗର ଏକ ଅଂଶ କଙ୍ଗୋଦରାଜ୍ୟ ରୂପେ ପରିଗଣିତ ହେଉଥିଲା । ତେଣୁ କେତେକଙ୍କ ମତରେ ଏହି ଅଞ୍ଚଳକୁ କଳିଙ୍ଗ, କଙ୍ଗୋଦ ରାଜ୍ୟମଧ୍ୟ କୁହାଯାଉଥିଲା । ମତ୍ସ୍ୟ ଓ ବାୟୁ ପୁରାଣରେ ତିତୀକ୍ଷ୍ୟୁଙ୍କ ବଂଶଧର କଳିଙ୍ଗ ରାଜବଂଶ ଅଟନ୍ତି । ମହାପଦ୍ମନନ୍ଦ କ୍ଷତ୍ରିୟବଂଶ ଧ୍ୱଂସ କରିବାକୁ ଅଗ୍ରସର ହେବା ପୂର୍ବରୁ କଳିଙ୍ଗରେ ୨୪ଜଣ ଐକ୍ଷ୍ୟାକୁ, ୨୭ଜଣ ପାଞ୍ଚାଳ, ୨୪ଜଣ କାଶି, ୨୮ଜଣ ହୈହୟ, ୩୨ଜଣ କଳିଙ୍ଗ, ୨୫ଜଣ ଆସ୍ମିକ, ୩୬ଜଣ କୁରୁ, ୨୮ଜଣ ମୈଥିଳି, ଓ ୨୩ଜଣ ସୁରସେନ ରାଜା କଳିଙ୍ଗ କଙ୍ଗୋଦର ଶାସନ କରିଥିଲେ । ବୋଧହୁଏ ଏହି ରାଜାମାନଙ୍କର ଭାଇ

ବିରାଦରମାନେ ସେତେବେଳେ କଙ୍ଗୋଦ ମଣ୍ଡଳରେ ଶାସନ କରୁଥିବେ ବୋଲି ଅନୁମାନ କରାଯାଏ ।

ମହାଭାରତ ଯୁଦ୍ଧ ପରେ ନନ୍ଦ ବଂଶର ମହାପଦ୍ମ ନନ୍ଦ ଅସଂଖ୍ୟ କ୍ଷତ୍ରିୟ ସଂହାର କରି ମଗଧରେ ରାଜୁତି କରିବା ଭିତରେ ୩୨ଜଣ ରାଜା କଳିଙ୍ଗାଧିପତି ହୋଇଥିବାର ପ୍ରବାଦ କହେ । ଖ୍ରୀ. ପୂ. ୩୨୭ ରେ ଆଲେକଜାଣ୍ଡର ଭାରତ ଆକ୍ରମଣ କରିଥିଲେ ମଧ୍ୟ ଭାରତର ଦକ୍ଷିଣ ଭାଗକୁ ଆସିନଥିଲେ । ସେତେବେଳେ କଳିଙ୍ଗକୁ ଗଣ୍ଡରିଡ଼ଇ କୁହାଯାଉଥିଲା । ଖ୍ରୀ . ପୂ ୩୨୨ରେ ନନ୍ଦବଂଶ ଧ୍ୱଂଶ ହୋଇ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ମଗଧ ଅଧିକାର କରିଥିଲେ । ଏହାଙ୍କ ସମୟରେ ଗ୍ରୀକ୍ ରାଜା ସେଲ୍ୟୁକସ୍ଙ୍କ ପ୍ରତିନିଧି ରୂପେ ମେଘାସ୍ଥିନିସ୍ ଭାରତ ଭ୍ରମଣ କରି ଯାହା ଲେଖିଯାଇଛନ୍ତି ସେଥିରେ କଳିଙ୍ଗ ଗଙ୍ଗରିଡ଼ଇ ରାଜ୍ୟରେ ମିଶି ରହିଥିଲା । ଗଙ୍ଗରିଡ଼ଇ ସେତେବେଳେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

କଳିଙ୍ଗ ଅତି ଶକ୍ତିଶାଳୀ ଥିବାରୁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଏହା ଜୟ କରିବାକୁ ସାହସ କରିନଥିଲେ । ଆଉ କେତେକ କୁହନ୍ତି, ନନ୍ଦ ରାଜା କଳିଙ୍ଗ ଜୟ କରି ସେହିଦିନଠାରୁ କ୍ରମାନ୍ୱୟରେ ଶାସନ କରି ଅନେକ ଉନ୍ନତିମୂଳକ କାର୍ଯ୍ୟ କରାଇବା ସଙ୍ଗେ ସଙ୍ଗେ ଏକ ଅତ୍ୟନ୍ତ ଶକ୍ତିଶାଳୀ ଦୁର୍ଦ୍ଧର୍ଷ ପାଇକ ସେନା ଗଠିତ କରାଇଥିବାରୁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଏହାକୁ ଅଧିକାର କରିବାକୁ ସାହସ କରିନଥିଲେ । ସେତେବେଳେ କଳିଙ୍ଗ - କଙ୍ଗୋଦର ଅବସ୍ଥିତି ମହାନଦୀଠାରୁ ଋଷିକୁଲ୍ୟା ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଓ ଏହା କଳିଙ୍ଗ ମଣ୍ଡଳ ଭିତରେ ଏକ ରାଜ୍ୟ ରୂପେ ପରିଗଣିତ ହେଉଥିଲା ।ଏହାର ଅଧିବାସୀ ଦୁର୍ଦ୍ଧର୍ଷ, ରଣପିପାସୁ ପାଇକ ଓ ବିଭବଶାଳୀ କୈବର୍ତ୍ତ ମାନେ ବିଶେଷ ଭାବରେ ଶକ୍ତିଶାଳୀ ଥିଲେ । କଳିଙ୍ଗ ବା କଙ୍ଗୋଦ ରାଜ୍ୟରେ ଏହି ପାଇକ ଓ କୈବର୍ତ୍ତମାନଙ୍କ ପ୍ରତିପତ୍ତି ଅତ୍ୟନ୍ତ ଉତ୍କୃଷ୍ଟ ଥିଲା ।

ଏଥିରୁ ଅନୁମିତ ହୁଏ ଯେ ଆଜିର ଏହି ବାଣପୁର ଅଞ୍ଚଳ ସେତେବେଳର କଙ୍ଗୋଦ ମଣ୍ଡଳ ଅଟେ ଯେଉଁଥିରେ ଦୁର୍ଦ୍ଧର୍ଷ ପାଇକ ସେନା ଓ ଧନଶାଳୀ କୈବର୍ତ୍ତମାନେ ବିଶେଷଭାବେ ଶକ୍ତିଶାଳୀ ଥିଲେ। ଏହି ମଣ୍ଡଳ ଅଧୀନରେ ସେତେବେଳେ ଆଜିର ଖଲିକୋଟ, କୋଦଳା, ଆଠଗଡ଼, ବୁଗୁଡ଼ା, ନୂଆଗଡ଼, ଓଡ଼ଗାଁ ପ୍ରଭୃତି ମିଶି ରହିଥିଲା। ଏସମସ୍ତଙ୍କୁ ମିଶାଇ କଙ୍ଗୋଦ ମଣ୍ଡଳ କୁହାଯାଉଥିଲା। ଏହାର ମୁଖ୍ୟ ଶାସନ କେନ୍ଦ୍ର ଏକ ସୁଉଚ୍ଚ ପାର୍ବତ୍ୟାଞ୍ଚଳ ତଥା ସୁରମ୍ୟ ନଦୀ ତଟରେ ରହିଥିଲା ଯାହାକୁ ବହୁ ପାଇକ ଓ କୈବର୍ତ୍ତ ବସ୍ତିମାନ ଚତୁର୍ଦ୍ଦିଗରେ ଘେରି ରହି ରକ୍ଷାର କବଚ ରୂପେ କାର୍ଯ୍ୟ କରୁଥିଲେ।। ବୋଧହୁଏ ଏହି ରାଜଧାନୀ ଶାଳିମା ନଦୀ କୂଳରେ ରହିଥିବାରୁ ଏହାକୁ ଶାଳିମା ନଗରୀ କୁହାଯାଉଥିଲା।

ନନ୍ଦବଂଶର ବଂଶଧରମାନେ ଏହି କଳିଙ୍ଗ, କଙ୍ଗୋଦ ରାଜ୍ୟରେ ବୋଧହୁଏ ତତ୍‌କାଳୀନ ସୁଶାସକ ରୂପେ କାର୍ଯ୍ୟ କରି ଅନେକ ଉନ୍ନତିମୂଳକ କାର୍ଯ୍ୟ କରିଥିବାର ଅନୁମାନ କରାଯାଏ। ତେବେ ଏହି ଶାଳିମା ନଗରୀର ଅବସ୍ଥିତି ତଥା ନନ୍ଦବଂଶର ରାଜାମାନଙ୍କ ବିଷୟରେ ଆଜି ମଧ୍ୟ ଇତିହାସ ନୀରବ।

କେତେକ କହନ୍ତି, ମହାଭାରତ ଯୁଦ୍ଧ ମହାପଦ୍ମନନ୍ଦଙ୍କ ପରେ ପରେ ବହୁ କ୍ଷତ୍ରିୟ ଜାତିର ଲୋକ ଉତ୍ତର ଭାରତ ପଟୁ ଦକ୍ଷିଣାଞ୍ଚଳକୁ ପଳାଇ ଆସି ବସତି ସ୍ଥାପନ କରିଥିବା ମନେହୁଏ। ଏହିମାନେ ତତ୍‌କାଳୀନ କଳିଙ୍ଗ କଙ୍ଗୋଦ ଅଞ୍ଚଳରେ ଥିବା ସମତଳ ଭୂମିରୁ ଜଙ୍ଗଲ ସଫା କରି କୃଷି, ଗୋପାଳନ ମାଧ୍ୟମରେ ବସତି ସ୍ଥାପନ କରିଥିବାରୁ ଏହି ସବୁ ଅଞ୍ଚଳରେ ଥିବା କନ୍ଧ, ସୌରା ପ୍ରଭୃତି ଅଧିବାସୀ ଜଙ୍ଗଲ ଥିବା ଅଞ୍ଚଳକୁ ଆସ୍ତେ, ଆସ୍ତେ ଚାଲିଯାଇଥିବାର ଅନୁମିତ ହୁଏ।

କାଳକ୍ରମେ ଏହିମାନେ କଳିଙ୍ଗ, କଙ୍ଗୋଦ ଅଞ୍ଚଳର ପରାକ୍ରମୀ ପାଇକ ରୂପେ ଖ୍ୟାତି ଲାଭ କରି ଚନ୍ଦ୍ରଗୁପ୍ତଙ୍କ ସମୟକୁ କଳିଙ୍ଗର ଏକ ଦୁର୍ଦ୍ଧର୍ଷ ପାଇକ ସେନା ବାହିନୀ କାର୍ଯ୍ୟ କରୁଥିଲା ।

କଳିଙ୍ଗ ରାଜା ଶ୍ରୀଖଣ୍ଡିଙ୍କ ଦ୍ୱାରା ପରାସ୍ତ ହୋଇଥିବାର ମହାଭାରତରେ ବର୍ଣ୍ଣିତ । କଳିଙ୍ଗର କ୍ଷତ୍ରିୟ ମାନେ ଶୁଦ୍ର ଭଳି ଜୀବନଯାପନ କରୁଥିବାରୁ ସେତେବେଳେ ଏହାକୁ ଏକ ଅପବିତ୍ର ରାଜ୍ୟ ବୋଲି କୁହାଯାଉଥିଲା । ହରିବଂଶ ପୁରାଣରେ ବର୍ଣିତ ମହାବୀର କଳିଙ୍ଗରେ ଜୈନ ଧର୍ମ ପ୍ରଚାର କରିବା ମୂଳରେ ଥିଲା କଳିଙ୍ଗ ରାଜାଙ୍କ ତାଙ୍କ ପିତାଙ୍କ ସହ ବନ୍ଧୁତ୍ୱ ଓ ମହାବୀରଙ୍କ ପ୍ରତି ରାଜାଙ୍କ ଅତୁଟ ସ୍ନେହ ମମତା ।

ଏ ସବୁ ପୌରାଣିକ କିମ୍ବଦନ୍ତୀକୁ ଯଦି ସତ୍ୟ ବୋଲି କୁହାଯାଏ ତାହେଲେ ତତ୍‌କାଳୀନ କଳିଙ୍ଗ ଓ କଙ୍ଗୋଦ ରାଜ୍ୟ ଏକ ପ୍ରସିଦ୍ଧ ଅଞ୍ଚଳ ଥିଲା ଏଥିରେ ସନ୍ଦେହ ନାହିଁ ।

କଙ୍ଗୋଦ ରାଜ୍ୟ କଳିଙ୍ଗର ଏକ ଅଂଶ ରୂପେ ଥିବାରୁ ଏହାର ଉନ୍ନତ ଶାଳିମା ନଗରୀରେ ମଧ୍ୟ କଳିଙ୍ଗାଧିପତିଙ୍କ ସାମୟିକ ଅବସ୍ଥାନ ହେଉଥିବାର ଅନୁମିତ ହୁଏ । କାରଣ କଳିଙ୍ଗ ରାଜପରିବାରର ଦାୟାଦମାନେ ହୁଏ ତ ସେତେବେଳେ କଙ୍ଗୋଦଖଣ୍ଡର ଶାସନ ଭାର ନେଇଥିବେ ଓ ଶାଳିମା ନଗରୀରେ ଅବସ୍ଥାନ କରିଥିବେ । ହରିବଂଶ ପୁରାଣରେ ବର୍ଣ୍ଣିତ କଳିଙ୍ଗ ରାଜପରିବାର ସହ ମହାବୀରଙ୍କ ସମ୍ବନ୍ଧ ଓ କଳିଙ୍ଗରେ ଜୈନ ଧର୍ମ ପ୍ରଚାର ପରସ୍ପର ଅଙ୍ଗାଙ୍ଗୀଭାବେ ଜଡିତ ।

# କଙ୍ଗୋଦ ମଣ୍ଡଳରେ ଜୈନ ଓ ବୌଦ୍ଧ ଧର୍ମର ଅଭ୍ୟୁଦୟ

ଆଗରୁ କୁହାଯାଇଛି ମହାଭାରତ ଯୁଦ୍ଧ ଠାରୁ ନନ୍ଦବଂଶ ଓ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଶାସନ କାଳ ମଧ୍ୟରେ କଳିଙ୍ଗ ଓ କଙ୍ଗୋଦ ମଣ୍ଡଳରେ ୩୨ରୁ ଊର୍ଦ୍ଧ୍ୱ ରାଜା ଶାସନ କରୁଥିବାର ଇତିହାସରେ ଦର୍ଶାଯାଇଛି । ଏହି ସମୟ ମଧ୍ୟରେ ମହାବୀରଙ୍କ ଜୈନଧର୍ମ ଓ ବୁଦ୍ଧଦେବଙ୍କ ବୌଦ୍ଧଧର୍ମ ଭାରତ ବର୍ଷରେ ପ୍ରଚାରିତ ହୋଇଥିବାବେଳେ କଙ୍ଗୋଦରେ ମଧ୍ୟ ଏହା ଅନୁଭୂତ ହୋଇଥିବାର ବହୁ ପ୍ରମାଣ ରହିଛି । ସେତେବେଳେ କଳିଙ୍ଗ କଙ୍ଗୋଦ ମହାନଦୀ ଠାରୁ ଋଷିକୁଲ୍ୟା ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିବାର ଅନେକ ଐତିହାସିକ ଲେଖିଯାଇଛନ୍ତି । ଏହି ଅଞ୍ଚଳକୁ ମଧ୍ୟ ଦେବଭୂମି କୁହାଯାଉଥିବାର ଅନେକ କୁହନ୍ତି ।

ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପରେ ତାଙ୍କର ନାତି ଅଶୋକଙ୍କ କଳିଙ୍ଗ ବିଜୟ କଳିଙ୍ଗର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଅଟେ । କଳିଙ୍ଗ ଓ କଙ୍ଗୋଦ ମଣ୍ଡଳ ତତ୍‌କାଳୀନ ଭାରତରେ ଏକ ଶକ୍ତିଶାଳୀ ରାଜ୍ୟ ରୂପେ ପରିଗଣିତ ହେଉଥିବାରୁ ଚନ୍ଦ୍ରଗୁପ୍ତ କିମ୍ବା ବିମ୍ବିସାର ଏହାକୁ ଅଧିକାର କରିନଥିଲେ । ଏହି କଥା ଯୁବରାଜ ଅଶୋକଙ୍କ ମନରେ କଳିଙ୍ଗ-କଙ୍ଗୋଦ ପ୍ରତି ଏକ ଆକର୍ଷଣ ସୃଷ୍ଟି କରିଥିଲା । କଳିଙ୍ଗ ସେତେବେଳେ ମଧ୍ୟ ଅତ୍ୟନ୍ତ ଧନଶାଳୀ ଥିବାର ପ୍ରତୀତ ହୁଏ । ଏଣୁ ଏହାର ଦୁର୍ଦ୍ଧର୍ଷ ପାଇକ ସେନା ଓ ଧନଶାଳୀ କୈବର୍ତ୍ତଙ୍କ ପ୍ରତିପତ୍ତିରେ ଲୋଭାସକ୍ତ ହୋଇ ଅଶୋକ କଳିଙ୍ଗ ଯୁଦ୍ଧ ଅଭିଯାନ କରିଥିଲେ ।

ପ୍ରବାଦ ଅଛି, ଚାରୁବାକୀ ନାମକ ଏକ ପରମା ସୁନ୍ଦରୀ କୈବର୍ତ୍ତ କନ୍ୟା ( ବୋଧହୁଏ କଙ୍ଗୋଦ ମଣ୍ଡଳର ତତ୍କାଳୀନ କୈବର୍ତ୍ତ ରାଜାଙ୍କ ଝିଅ ) ପ୍ରତି ଆସକ୍ତ ହୋଇ ସମ୍ରାଟ ଅଶୋକ କଳିଙ୍ଗ ଅଭିଯାନ କରିଥିବାର ଆଉ ଏକ କାରଣ ହୋଇଥାଇପାରେ । କାରଣ ଏହି ସୁକନ୍ୟା ଅସାମାନ୍ୟା ସୁନ୍ଦରୀ ହୋଇଥିବା ସଙ୍ଗେ

ସଙ୍ଗେ ଅତ୍ୟନ୍ତ ବିଦୁଷୀ ଥିବାର ପ୍ରବାଦ କୁହେ । ଏହି ସୁକନ୍ୟା ସମ୍ବନ୍ଧରେ ଅଶୋକଙ୍କ ନିକଟକୁ ସମ୍ବାଦ ପ୍ରେରିତ ହୋଇଥିବାରୁ, କଳିଙ୍ଗ ଯୁଦ୍ଧ ପାଇଁ ମଧ୍ୟ ଅଶୋକ ଲାଳାୟିତ ହୋଇଥିଲେ ।

ସେତେବେଳର ଲୋକଶ୍ରୁତି କହେ ଯେ ତତ୍କାଳୀନ କଳିଙ୍ଗର ରାଜଧାନୀ ତୋଷାଳୀ ନାମକ ଏକ ନଗରି ରୂପେ ପ୍ରଖ୍ୟାତ ଥିଲା । ଐତିହାସିକମାନଙ୍କ ମତରେ ଏହି ତୋଷାଳୀ ଆଜିର ଶିଶୁପାଳଗଡ଼ ନିକଟରେ ଥିଲା । କଙ୍ଗୋଦ ମଣ୍ଡଳ କଳିଙ୍ଗର ଏକ ଗୁରୁତ୍ୱପୂର୍ଣ୍ଣ ଭୂଖଣ୍ଡ ଥିଲା ଓ ଏଥିରେ ବହୁ ସଂଖ୍ୟକ ଦୁର୍ଦ୍ଧର୍ଷ ପାଇକ (କ୍ଷତ୍ରିୟ) ଓ ବିତ୍ତଶାଳୀ କୈବର୍ତ୍ତ ତଥା ବଣିକ ଶ୍ରେଣୀର ଲୋକ ବାସ କରୁଥିଲେ । ଏହାର ମୁଖ୍ୟ ଶାସନ କେନ୍ଦ୍ର ଶାଳିମା ନଗରୀ ଥିବାର କିମ୍ବଦନ୍ତୀ କୁହେ । ବୋଧହୁଏ ଏହି ଶାଳିମା ନଗରୀ ଘଣ୍ଟଶିଳା ଠାରୁ ବିରକାଇ ପର୍ବତ ମଧ୍ୟରେ କେଉଁଠି ଅବସ୍ଥାପିତ ଥିଲା । ଆଜିର ଗୋଦାବରୀଶ ମହାବିଦ୍ୟାଳୟ, ଉତ୍ତରାୟଣୀ ଠାକୁରାଣୀ ମନ୍ଦିର ଓ ଘଣ୍ଟଶିଳାର ପାଦଦେଶ ଭିତରେ ଏହି ନଗରୀ ବିସ୍ତାର ଲାଭ କରିଥିବାର ପ୍ରବାଦ ମାନ ରହିଅଛି । ଏହି ନଗରୀରେ ତତ୍କାଳୀନ କଳିଙ୍ଗ ରାଜାଙ୍କ ପ୍ରତିନିଧି ରୂପେ ବିଭିନ୍ନ ସମୟରେ ବିଭିନ୍ନ ରାଜପରିବାର ଶାସନ କରୁଥିବାର ଅନୁମିତ ହୁଏ । ଚାରୁବାଳା କିମ୍ବଦନ୍ତୀ ଓ କୈବର୍ତ୍ତ ରାଜପରିବାର ସେହିଭଳି ଏକ କିମ୍ବଦନ୍ତୀ ଅଟେ । ଏହାର ସତ୍ୟତା ଉପରେ ଇତିହାସ ନୀରବ । ତେବେ ବର୍ତ୍ତମାନ ମଧ୍ୟ ଅନେକ କୈବର୍ତ୍ତ ସମ୍ପ୍ରଦାୟର ଗାଁ ମାନଙ୍କରେ ସୁନ୍ଦରୀ ଝିଅମାନଙ୍କୁ ଚାରୁ, ଚାରୁବାଳା ନାମରେ ନାମିତ କରିଥିବାର ପରିଦୃଷ୍ଟ ହୁଏ ।

ଅଶୋକଙ୍କ କଳିଙ୍ଗ ଯୁଦ୍ଧରେ ଏହି ଅଞ୍ଚଳର ଅନେକ ଦୁର୍ଦ୍ଧର୍ଷ ପାଇକ ସେନା ନିଜର ରକ୍ତଦେଇ ଦେଶ ମାତୃକାର ରକ୍ଷାକରିବା ପାଇଁ ବଜ୍ର ଶପଥ ନେଇଥିଲେ ଓ ଏମାନଙ୍କ ମଧ୍ୟରୁ ବହୁ ସୈନ୍ୟ ଏହି ଯୁଦ୍ଧରେ ନିହତ ହୋଇଥିବାର ଇତିହାସ କୁହେ । କଳିଙ୍ଗ କଙ୍ଗୋଦ ଅଧିକାର କରିବା ପରେ ମଧ୍ୟ ବୀରାଙ୍ଗନା

ଚାରୁବାକୀ ଅଶୋକଙ୍କ ପାଣିଗ୍ରହଣ କରିବାକୁ ମନା କରିଥିଲେ ଓ ପରେ ଅଶୋକ ଚଣ୍ଡାଶେକରୁ ଧର୍ମାଶୋକରେ ପରିଣତ ହୋଇ ବୌଦ୍ଧଧର୍ମ ଗ୍ରହଣ କରିବା ପରେ କୁଆଡ଼େ ଚାରୁବାକୀ ଅଶୋକଙ୍କୁ ବିବାହ କରିଥିଲେ। ଉଗ୍ର ଚଣ୍ଡାଶୋକଙ୍କୁ ଧର୍ମପଥକୁ ଆଣିବାରେ ଚାରୁବାକୀଙ୍କ ଅବଦାନ ଅନବଦ୍ୟ ବୋଲି କିମ୍ବଦନ୍ତୀ କୁହେ। ଏହି ଲୋକକଥାକୁ ପ୍ରମାଣ କରିବା ପାଇଁ ଐତିହାସିକ ମାନେ କୌଣସି ତଥ୍ୟ ପାଇନଥିବାରୁ ଏହାକୁ କିମ୍ବଦନ୍ତୀ ବା ଲୋକକଥା କୁହାଯାଇପାରେ। ତେବେ ଚାରୁବାକୀ ଗଳ୍ପ ଏ ଅଞ୍ଚଳରେ ଆଜି ମଧ୍ୟ ପ୍ରଚଳିତ। ଏପରିକି ରାଜା, ରାଜପରିବାରର ସମସ୍ତ ଯୁଦ୍ଧରେ ଟଳିଯାଇଥିଲେ ମଧ୍ୟ ଚାରୁବାକୀ ଯୁଦ୍ଧ ଚଳାଇରଖିଥିବାର କେତେକ ମତ ଦିଅନ୍ତି। ଏହା ମହତାବଙ୍କ ଉତ୍କଳ ଇତିହାସରେ ମଧ୍ୟ ଭଲଭାବରେ ଦର୍ଶାଯାଇଅଛି।

ଅଶୋକଙ୍କ କଳିଙ୍ଗ ବିଜୟ ଖ୍ରୀ.ପୂ ୨୬୧ ମସିହାରେ ଅନୁଷ୍ଠିତ ହୋଇଥିଲା ଓ ତା ପରେ ଅଶୋକ ଧର୍ମାଶୋକରେ ପରିରତ ହୋଇ ବୌଦ୍ଧଧର୍ମର ବିକାଶ ପାଇଁ ଖ୍ରୀ.ପୂ ୨୬୧ଠାରୁ ତାଙ୍କର ଦେହାନ୍ତ ପର୍ଯ୍ୟନ୍ତ (ଖ୍ରୀ.ପୂ.୨୩୨) ବହୁ ବୌଦ୍ଧକିର୍ତ୍ତୀ ଓ ଜନହିତକର କାର୍ଯ୍ୟ କରିଥିବାର ପ୍ରମାଣ ରହିଅଛି। ଅନେକ ଶିଳାଲେଖ ଓ ଅଶୋକସ୍ତମ୍ଭ ଆଜି ମଧ୍ୟ ଭଗ୍ନ, ଅର୍ଦ୍ଧଭଗ୍ନ ଅବସ୍ଥାରେ ରହିଅଛି।

ମହତାବ ତଥା ଅନ୍ୟାନ୍ୟ ଐତିହାସିକମାନଙ୍କ ଦ୍ୱାରା ପ୍ରଣିତ ଉତ୍କଳ ଇତିହାସରେ ଅଶୋକଙ୍କ କଳିଙ୍ଗ ବିଜୟ ପରେ ସେ ଏହାର ସୁଶାସନ ପାଇଁ ଦୁଇଟି ରାଜଧାନୀ କରିଥିବାର ପ୍ରମାଣ ମିଳେ। ପ୍ରଥମଟି ତୋଷାଳୀଗଡ଼ ବା ଆଧୁନିକ ଭୁବନେଶ୍ୱର ସମୀପ ଶିଶୁପାଳଗଡ଼ ନିକଟ କିମ୍ବା ଧଉଳିଗିରି ଅଞ୍ଚଳ ଅନ୍ୟଟି ଗଞ୍ଜାମର ଜଉଗଡ଼ ଥିଲା। ଏହି ଦୁଇଟି ଅଞ୍ଚଳରେ ଆଜି ମଧ୍ୟ ଅଶୋକଙ୍କ ଅନୁଶାସିତ ଖୋଦିତ ଅନେକ ପ୍ରସ୍ତର ତଥା ଶିଳାଲିପି ସୁରକ୍ଷିତ କରି ରଖାଯାଇଥିବାର ସମସ୍ତେ ଜାଣନ୍ତି।

ତୋଶାଳୀଠାରୁ ଜଉଗଡ଼ ବା (ସମପା) ପର୍ଯ୍ୟନ୍ତ ଯିବା ବାଟରେ କଙ୍ଗୋଦ ମଣ୍ଡଳର ପ୍ରାୟ ସମସ୍ତ ଅଞ୍ଚଳ ଅତିକ୍ରମ କରିଥିବାକୁ ହୁଏ। ଏଣୁ ଏହି ସମୟରେ

କଙ୍ଗୋଦ ମଣ୍ଡଳରେ ବହୁ ବୌଦ୍ଧକୀର୍ତ୍ତି ହୋଇଥିବାର ଅନୁମାନ କରାଯାଏ। ସେଥିଭିତରୁ ଗୁରୁତ୍ୱ ବହନ କରିଥିବା ମୁଖ୍ୟ ବୌଦ୍ଧକୀର୍ତ୍ତି ଗୁଡ଼ିକ ହେଲା - ବୁଗୁଡ଼ା ନିକଟସ୍ଥ ବୁଦ୍ଧ ଖୋଲ, ପୁରୁଷୋତ୍ତମପୁର ନିକଟସ୍ଥ ତାରାତାରେଣୀ ପର୍ବତମାଳା, ଭୁଷଣ୍ଡପୁର ସ୍ଥିତ ଆଜିକାର ତାରାପୀଠ ଅଞ୍ଚଳ, ବାଣପୁରର ଗୋଦାବରୀଶ ବିଦ୍ୟାପୀଠ ସମୀପ ଉତ୍ତରାୟଣୀ ତଥା ଘଣ୍ଟଶିଳାର ପାଦଦେଶରେ ଥିବା ସମତଳ ଅଞ୍ଚଳ, ନିର୍ମଳ ଝରର ଚତୁଷ୍ପାର୍ଶ୍ୱରେ ଥିବା ଅଞ୍ଚଳ ପ୍ରଭୃତି। ଏହାଛଡ଼ା ଏହି ମୁଖ୍ୟ ବୌଦ୍ଧପୀଠ ଗୁଡ଼ିକ ବ୍ୟତୀତ ଆଜିର ମଠ ସଂସ୍କୃତି ଭଳି ଅନେକ ଛୋଟ ଛୋଟ ବୌଦ୍ଧ ଶ୍ରମଣ ନିଜ ନିଜର ପୀଠ ସ୍ଥାପନ କରିଥିବାର ମନେହୁଏ ।ସେଗୁଡ଼ିକ ହେଲା ଭାଲେରୀ ପାହାଡ଼ର ପାଦଦେଶର ଉତ୍ତରରେ ଥିବା ତାରେଣୀ ମନ୍ଦିର, ସିଦ୍ଧାମ୍ବରୀ ପୀଠ, ସୋଲରୀ ଶିଖରରେ ଥିବା ସାମୁକା ଅଞ୍ଚଳ, ଭାଲେରୀର ଦକ୍ଷିଣ ପାର୍ଶ୍ୱରେ ଥିବା ନାରାୟଣୀ ମନ୍ଦିରର ଚତୁଃସୀମା ପ୍ରଭୃତି। ଏହି ସବୁ ଅଞ୍ଚଳରେ ସେତେବେଳେ ବୌଦ୍ଧଧର୍ମର ମୁଖ୍ୟ ପୀଠ ସ୍ଥାପିତ ହୋଇ ବୁଦ୍ଧଂ ଶରଣଂ ଗଚ୍ଛାମି, ସଙ୍ଘ ଶରଣଂ ଗଚ୍ଛାମି ନିନାଦରେ ବନଭୂମି ପ୍ରକମ୍ପିତ ହେଉଥିବାର ସ୍ଥାନୀୟ କିମ୍ବଦନ୍ତୀ ଓ ଲୋକକଥାରୁ ପରିଜ୍ଞାତ। ଏସବୁ ପୀଠ ମଧ୍ୟରୁ ଅନେକ ପରବର୍ତ୍ତୀକାଳରେ ତନ୍ତ୍ରପୀଠରେ ପରିଣତ ହୋଇଥିବାର ମନେହୁଏ । ଏହାକୁ ପ୍ରମାଣ କରିବାକୁ ହେଲେ ଏହି ଅଞ୍ଚଳରେ ମୃତ୍ତିକା ଖନନ କରି ପ୍ରତ୍ନତତ୍ତ୍ୱ ବିଭାଗ କିଛିଟା ଲୋକଲୋଚନକୁ ଆଣିବା ଆବଶ୍ୟକ ।

ଯଦିବା କିଛି ଶିଳାଲେଖ ଏ ସମ୍ବନ୍ଧରେ ପ୍ରମାଣିତ ହେବାପାଇଁ ମିଳିନାହିଁ, ତଥାପି ଏହି କ୍ଷେତ୍ରଗୁଡ଼ିକରେ ପରବର୍ତ୍ତୀକାଳରେ ( ତନ୍ତ୍ର ଯୁଗରେ ) ବୌଦ୍ଧ ତାରା ପୀଠ ହୋଇଥିବାର ଆଜି ବି ଦୃଷ୍ଟି ଗୋଚର ହୁଏ । ବାଣପୁରର ଭଗବତୀ ପୀଠ ଯେ ସେତେବେଳେ ବୌଦ୍ଧ ପୀଠ ଥାଇ ପରେ ତନ୍ତ୍ର ପୀଠରେ ପରିଣତ ନହୋଇଥିବ ଏହା ମଧ୍ୟ କୁହାଯାଇନପାରେ । ଆଶ୍ଚର୍ଯ୍ୟ ହେବାକୁ ହୁଏ, ଯେତେବେଳେ ଗୋଦାବରୀଶ ବିଦ୍ୟାପୀଠର ନିର୍ମାଣ ହୋଇଥିଲା (ଉନବିଂଶ

ଶତାବ୍ଦୀର ତୃତୀୟ ବା ଚତୁର୍ଥ ଦଶକ ବେଳେ ) ସେତେବେଳେ ଯେଉଁ ସୁନ୍ଦର ମୂର୍ତ୍ତିଗୁଡ଼ିକ ସଂଗ୍ରହ କରାଯାଇ ରଖାଯାଇଅଛି ତାହା ଯେ ବୌଦ୍ଧ ମୂର୍ତ୍ତି ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଆଜି ପାଟପୁର, କୋଟପୁର ସନ୍ନିକଟ ଅମୁହାଁ ଇଟା ମନ୍ଦିରର ପୁନରୁଦ୍ଧାର କରାଯାଇଥିବାବେଳେ ଏହାର ସତ୍ୟତା କିଛି ପରିମାଣରେ ଲୋକଲୋଚନକୁ ଆସୁଥିବାର ମନେହୁଏ । ବିଂଶଶତାବ୍ଦୀର ଅନ୍ତିମଭାଗରେ କେତେକ ବଦାନ୍ୟ ଧର୍ମପ୍ରାଣ ବ୍ୟକ୍ତି ଏହି ଇଟା ମନ୍ଦିରକୁ ପୁନରୁଦ୍ଧାର କରିବା ପାଇଁ ପ୍ରୟାସ କରି ଏହାର ଉପରଭାଗରେ ଥିବା ଇଟାର ଦୁଆରକୁ ଭଗ୍ନ କଲାବେଳେ ଇଟା ଗୁଡ଼ିକର ଲମ୍ବ ୩' ଓ ପ୍ରସ୍ଥ ୧୪ଇଞ୍ଚ ଥିବାର ଦେଖାଗଲା । ଏହି ମନ୍ଦିରରେ କୌଣସି ପାର୍ଶ୍ୱମନ୍ଦିର ବା ମୁଖଶାଳା ନଥିଲା, ଠିକ୍ ଏକ ବୌଦ୍ଧସ୍ତୁପ



(ପୁନରୁଦ୍ଧାର କରାଯାଇଥିବା କୋଟପୁରର ଅମୁହାଁ ମନ୍ଦିର)

ଭଳି । ଏହାର ପ୍ରବେଶ ଦ୍ୱାର ୨/୩ ମଣିଷ ଉଚ୍ଚରେ ରହିଥିଲା । ଇଟାଗୁଡ଼ିକ କୌଣସି ଅଠାଭଳି ପଦାର୍ଥରେ ଯୋଡ଼ାଯାଇଥିଲା । ପୁନରୁଦ୍ଧାର ପାଇଁ ସର୍ବାଗ୍ରେ

ଆଗଭର ହୋଇଥିବା କୋଟପୁରର ଶ୍ରୀଯୁକ୍ତ ରଘୁନାଥ ଶତପଥୀ ଏ ଯୁଗରେ ଦୁର୍ମିଳ ଏଭଳି ଇଟା ଘଣ୍ଟଶିଳାର ହନୁମାନ ମନ୍ଦିର ପଶ୍ଚାତ୍‌ଭାଗରେ ଦେଖିଥିବାର ପ୍ରକାଶ କରିବାପରେ କେତେକ ଲୋକଙ୍କ ପ୍ରଚେଷ୍ଟାରେ ଏହା ଖନନ କରାଯିବାରୁ ଏକ ପ୍ରକାଣ୍ଡ ଗଡ଼ଖାଇ ଥିବାର ସମସ୍ତେ ଦେଖିଲେ । ଏହି ଗଡ଼ଖାଇର ସୁଦୃଢ ତଥା ପ୍ରଶସ୍ତ କାନ୍ଥରୁ ପ୍ରାୟ ୩ହଜାର ଏହି ବିରାଟକାୟ ଇଟା ସଂଗ୍ରହ କରାଯାଇ ଉକ୍ତ ମନ୍ଦିରର ପୁନରୁଦ୍ଧାର କାର୍ଯ୍ୟ ଏହି କିଛିଦିନ ତଳେ ସମାପ୍ତ ହୋଇଥିବାର ସର୍ବଜନ ବିଦିତ । ଏହି ଅମୂହାଁ ଇଟା ମନ୍ଦିର ଏକ ଶୂନ୍ୟ ମନ୍ଦିର ଥିବାର ସମସ୍ତେ ଜାଣନ୍ତି । କୌଣସି ପାର୍ଶ୍ୱଦେବତା ନଥାଇ ଶୂନ୍ୟଥିବା ଆସନ ଗୁଡ଼ିକ ଉପର ଭାଗରେ ଘଣ୍ଟି ଓହଳିଥିବାର ସମସ୍ତେ ଦେଖିଛନ୍ତି । ଏଣୁ ନିଃସନ୍ଦେହରେ କୁହାଯାଇପାରେଯେ ଏହା ଏକ ବୌଦ୍ଧ ସ୍ତୁପ ଥିଲା । କିମ୍ବଦନ୍ତୀ ଅନୁଯାୟୀ ବାଣାସୁର ଗୋଟିଏ ରାତିରେ ଏହାକୁ ଗଢିଥିବା କଥା କପୋଳକଳ୍ପିତ । ଘଣ୍ଟଶିଳାର ଉତ୍ତର ପାର୍ଶ୍ୱରେ ଥିବା ଏହି ଗଡ଼ଖାଇ ନିଶ୍ଚୟ ଏକ ପ୍ରକାଣ୍ଡ ବୌଦ୍ଧପୀଠ କିମ୍ବା ତତ୍କାଳୀନ ରାଜାମାନଙ୍କ ଏକ ଗୁପ୍ତ ଗଡ଼ ଥିବାର ମନେହୁଏ । ହୁଏତ ତତ୍କାଳୀନ ସମୃଦ୍ଧ ଶାଳିମା ନଗରୀର ଏହା ଏକ ଅଂଶ ମଧ୍ୟ ହୋଇପାରେ ।

ଘଣ୍ଟଶିଳାରେ ଗଢିଉଠିଥିବା ଏହି ବୌଦ୍ଧପୀଠରେ ଘଣ୍ଟ ଘଣ୍ଟିର ଆବାଜରେ ବୌଦ୍ଧଭକ୍ତମାନେ ସମବେତ ହୋଇ ଧର୍ମବାଣୀ ଶୁଣୁଥିବାର ମଧ୍ୟ ପ୍ରତୀୟମାନ ହୁଏ । ବୋଧହୁଏ ଏହା ବାଣାସୁରର ଘଣ୍ଟ ନହୋଇ ବୌଦ୍ଧପୀଠର ଘଣ୍ଟ କହିଲେ ଅଧିକ ସମୀଚନ ହେବ ।

ଖାରବେଳଙ୍କ ସମୟରେ ଜୈନଧର୍ମର ପ୍ରସାର ଘଟିଥିବାର ଇତିହାସ ସିଦ୍ଧ ଅଟେ । ଏହି ସମୟରେ କଙ୍ଗୋଦର ବିଭିନ୍ନ ସ୍ଥାନରେ ଜୈନ ଉପାସନା ପୀଠ ନିର୍ମିତ ହୋଇଥିବାର ମନେହୁଏ । ହନ୍ତୁଆଡ଼ଠାରେ ପ୍ରତିଷ୍ଠିତା ଟିକିରାଇ ଠାକୁରାଣୀ ମନ୍ଦିରରେ ଏବେ ମଧ୍ୟ ଏକ ବିଶାଳକାୟ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ଏହି ମୂର୍ତ୍ତି ଏକ ଜୈନ ଅବଲୋକିତେଶ୍ୱର ମୂର୍ତ୍ତି ବୋଲି ଅନେକ

ଐତିହାସିକ ମତ ଦିଅନ୍ତି । ଜୈନମାନେ ପ୍ରତିବର୍ଷ ଖଣ୍ଡଗିରିଠାରୁ ପଦବ୍ରଜରେ ବାଣପୁର ବଙ୍କାଡ଼ ଗଡ଼ଠାକୁ ଆସୁଥିଲେ । ଏହାକୁ ପ୍ରବଜ୍ୟା ବ୍ରତ କୁହାଯାଉଥିଲା। ପ୍ରତିବର୍ଷ ଚୈତ୍ର ମାସରେ ଏହି ପ୍ରବଜ୍ୟା ବ୍ରତ ପାଳିତ ହେଉଥିବାର କୁହାଯାଏ ।



(ହନ୍ତୁଆଡ଼ରେ ପ୍ରତିଷ୍ଠିତ ଟିକିରାଇ ଠାକୁରାଣୀ)

ଯେଉଁଠାରେ ଏହି ଜୈନମେଳା ହେଉଥିଲା ତାହାକୁ ମେଳନ ପଡ଼ିଆ କୁହାଯାଉଥିଲା । ଏହି ମେଳନ ପଡ଼ିଆରେ ଏବେ ମଧ୍ୟ ପଞ୍ଚଦୋଳ ମେଳନ ହେଉଥିବାର ଆମେ ଜାଣିଛେ । ବୋଧହୁଏ ସେହି ଜୈନ ମେଳା ପଡ଼ିଆ ଆଜିର ହନ୍ତୁଆଡ଼ର ପଲଟଣ ପଡ଼ିଆ ବୋଲି ପ୍ରତୀତ ହୁଏ । କାଳକ୍ରମେ ପ୍ରବଜ୍ୟା ବ୍ରତ ଭଳି ଏବେ ସେଇ ଚୈତ୍ରକୃଷ୍ଣ ପଞ୍ଚମୀ ଦିନ ଅନେକ ଦେବାଦେବୀ ଏଠି ମିଳିତ ହୋଇ ପଞ୍ଚଦୋଳ ଯାତ୍ରା ଅନୁଷ୍ଠିତ ହୁଏ । ସେଇ ଟିକିରାଇ ମନ୍ଦିର ମଧ୍ୟ ଏହି ହନ୍ତୁଆଡ଼ଠାରେ ଅବସ୍ଥିତ ହୋଇଥିବାରୁ ଏହାର ସତ୍ୟତା ଉପରେ ବିଶ୍ୱାସ ଜାତ ହୁଏ ।ଏସବୁକୁ ଆଧାର କଲେ ମନେହୁଏ ଯେ ତତ୍କାଳୀନ ଶାଳିମାନଗରୀ ବା କଙ୍ଗୋଦର ରାଜଧାନୀ ର ପରିସୀମା ମଧ୍ୟରେ ଏହି ହନ୍ତୁଆଡ଼ ଅଞ୍ଚଳ ଅବସ୍ଥିତ ଥିଲା ।

# ଖାରବେଳଙ୍କ ପରେ କଳିଙ୍ଗ ଓ କଙ୍ଗୋଦର ଅବସ୍ଥା

ଗୁପ୍ତବଂଶ, ସମୁଦ୍ରଗୁପ୍ତଙ୍କ ପରେ ମାଠର ବଂଶ ବଳଶାଳୀହୋଇ ଶାସନ କଲେ । ଏମାନଙ୍କ ରାଜଧାନୀ ପାରଳାଖେମୁଣ୍ଡି ନିକଟରେଥିବା ଶ୍ରୀପୁର ଥିଲା (ଏବର ଭାଟିଆ ଶ୍ରୀପୁର ) ଏମାନେ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ ଓ ଏହି ସମୟରେ ଉତ୍ତର କଳିଙ୍ଗ, ଋଷିକୁଲ୍ୟାଠାରୁ ମହାନଦୀ ପର୍ଯ୍ୟନ୍ତ ଅଞ୍ଚଳରେ ବିଗ୍ରହ୍ ରାଜବଂଶ ଶକ୍ତିଶାଳୀ ହୋଇ ରାଜୁତି କରୁଥିଲେ ।

ସପ୍ତମ ଶତାବ୍ଦୀର ଆରମ୍ଭରେ ଶଶାଙ୍କ ନାମକ ଜଣେ ରାଜା କଙ୍ଗୋଦ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ଖ୍ରୀଷ୍ଟିୟ ୧ମରୁ ୪ର୍ଥ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗର ଇତିହାସ ଗଭୀର ତମସାଛନ୍ନ । ଏ ସମ୍ବନ୍ଧରେ ବହୁ ବାଦାନୁବାଦ ଆଜି ମଧ୍ୟ ଐତିହାସିକ ମାନଙ୍କ ମଧ୍ୟରେ ଦେଖାଯାଏ ।

ତେବେ ଖାରବେଳଙ୍କ ପରେ ଆନ୍ଧ୍ରର ସାତବାହାନ ରାଜବଂଶ ୨ୟ ଶତାବ୍ଦୀ ପର୍ଯ୍ୟନ୍ତ ବଳଶାଳୀ ହୋଇ ମଗଧ ପର୍ଯ୍ୟନ୍ତ ରାଜ୍ୟ ଅଧିକାର କରିଥିଲେ ଓ କଳିଙ୍ଗ ଓ କଙ୍ଗୋଦ ମଧ୍ୟ ଏହି ରାଜବଂଶର ଅଧୀନରେ ଥିଲା । ସାତବାହନଙ୍କ ପତନପରେ ଇକ୍ଷ୍ୱାକୁମାନେ ୨୦୦ରୁ ୨୬୦ପର୍ଯ୍ୟନ୍ତ କଳିଙ୍ଗ ଓ କଙ୍ଗୋଦର ଶାସକ ଥିଲେ । ଖ୍ରୀଷ୍ଟିୟ ୨ୟ ଶତାବ୍ଦୀରେ ଗ୍ରୀକ୍ ପରିବ୍ରାଜକ ଟୋଲେମି କଳିଙ୍ଗ ଓ କଙ୍ଗୋଦ ବର୍ହିବାଣିଜ୍ୟ ପାଇଁ ବିଖ୍ୟାତ ଥିବାର ଲେଖିଯାଇଛନ୍ତି । କଙ୍ଗୋଦର ପାଲୁର ବନ୍ଦର ଏକ ମୁଖ୍ୟ ବାଣିଜ୍ୟ କେନ୍ଦ୍ର ଥିବାର ତାଙ୍କ ଦ୍ୱାର ପ୍ରତିପାଦିତ ହୋଇଥିଲା । ସେହିଭଳି କନ୍ନାଗର ବା କୋଣାର୍କ ବନ୍ଦର କଳିଙ୍ଗର ଏକ ମୁଖ୍ୟ ବାଣିଜ୍ୟ କେନ୍ଦ୍ର ଥିଲା । ଇକ୍ଷ୍ୱାକୁମାନଙ୍କ ପରେ ଉତ୍ତରଭାରତରୁ କୁଶାନମାନେ କଙ୍ଗୋଦ ଅଧିକାର କରି ସମୁଦ୍ରପୁପ୍ତଙ୍କ ପର୍ଯ୍ୟନ୍ତ ଶାସନ କରିଥିବାର ଇତିହାସ କୁହେ । ସମୁଦ୍ରଗୁପ୍ତ ଖ୍ରୀଷ୍ଟିୟ ୩୪୨/୩୪୩ ରେ ଦିଗ୍‌ବିଜୟରେ ବାହାରି ସମଗ୍ର ଦକ୍ଷିଣ ଭାରତ ଜୟ କରିଥିବାର ଇତିହାସରୁ ପ୍ରମାଣିତ । ସେତିକିବେଳେ ସେ

କଳିଙ୍ଗ ଓ କଙ୍ଗୋଦକୁ ନିଜ ଶାସନାଧୀନ କରିଥିବା ଅନେକ ଐତିହାସିକ ମତ ଦିଅନ୍ତି । ସେତେବେଳେ ସେ ମହାକାନ୍ତାର, ପିଷ୍ଟପୁର, ଗିରିକୋଟର, ଏରଣ୍ଡପଲ୍ଲୀ ଓ ଦେବରାଷ୍ଟ୍ର ନାମରେ ସମଗ୍ର ଦକ୍ଷିଣ ଭାରତକୁ ବିଜୟ କରିଥିଲେ । ଏହି ଦେବରାଷ୍ଟ୍ର ହିଁ କଳିଙ୍ଗ, କଙ୍ଗୋଦ ନାମରେ ଖ୍ୟାତ ଥିବାର ଅନୁମିତ ହୁଏ ।

କିଛିକାଳପରେ ପିଷ୍ଟପୁରର ରାଜବଂଶ ପରାକ୍ରମଶାଳୀ ହୋଇ କଳିଙ୍ଗ ଓ କଙ୍ଗୋଦ ଶାସନ କରିଥିଲେ । ସେ ବଂଶର ପ୍ରତିଷ୍ଠାତା ଥଇଲେ ଶକ୍ତିବର୍ମା । ସେ ଇକ୍ଷ୍ୱାକୁ ଓ ସାତବାହନ ରାଜବଂଶର ବଂଶଧର ଥିବାରୁ ତାଙ୍କୁ ବଶିଷ୍ଠପୁତ୍ର କୁହାଯାଉଥିଲା । ଏହି ବଂଶର ଅନନ୍ତ ଶକ୍ତିବର୍ମା ଅତ୍ୟନ୍ତ ପରାକ୍ରମୀ ଥିଲେ । କାଳକ୍ରମେ ଏମାନେ ବିଷ୍ଣୁକୁଣ୍ଡୀ ରାଜା ମାଧବ ବର୍ମାଙ୍କ ଦ୍ୱାରା ପରାସ୍ତ ହୋଇ ଦକ୍ଷିଣଭାଗ ପରିତ୍ୟାଗ କରି କଙ୍ଗୋଦ ଓ କଳିଙ୍ଗ ରାଜ୍ୟରେ ନିଜର ଶାସନ ପ୍ରତିଷ୍ଠା କରିଥିବାର ମନେହୁଏ । ଏହି ବଂଶର ଚନ୍ଦ୍ରବର୍ମା ନିଜକୁ କଳିଙ୍ଗାଧିପତି ରୂପେ ପ୍ରତିଷ୍ଠିତ କରାଇଥିଲେ ।

ଉକ୍ତ ମାଠର ବଂଶ ଖ୍ରୀଷ୍ଟିୟ ୩୫୦ରୁ ୪୩୦ ପର୍ଯ୍ୟନ୍ତ ଶାସନ କରିଥିଲେ । ଏହି ବଂଶର ସାମନ୍ତରାଜାମାନେ ଶାଳିମା ନଗରୀର ଅଧିପତି ଥିଲେ ।

ମାଠର ବଂଶପରେ ବଶିଷ୍ଠ ବଂଶର ( ଆନ୍ଧ୍ରପ୍ରଦେଶର ବିଷ୍ଣୁକୁଣ୍ଡୀବଂଶର) ଅତି ଶକ୍ତିଶାଳୀ ହୋଇ କଳିଙ୍ଗ ଓ କଙ୍ଗୋଦ ଅଧିକାର କଲେ । ଏହି ବଂଶର ଗୁଣବର୍ମା - ପ୍ରଭଞ୍ଜନ ବର୍ମା, ଅନନ୍ତବର୍ମା ( ୪୩୦ରୁ ୪୮୫ ପର୍ଯ୍ୟନ୍ତ ) ଶାସନ କରିଥିବାର ଇତିହାସ କୁହେ । ଏହିମାନେ ପ୍ରଭୁଶକ୍ତି, ମନ୍ତ୍ରଶକ୍ତି ଓ ଉତ୍ସାହଶକ୍ତିକୁ ରାଜଶକ୍ତିର ୩ଟି ଅଂଶ ବୋଲି ମାନୁଥିଲେ ।

ଏହାପରେ ୪୮୫ରୁ ୫୭୪ ପର୍ଯ୍ୟନ୍ତ ମାନବଂଶ, ବିଗ୍ରହ ବଂଶ ଓ ବଉ ବଂଶ ଶାସନ କରିଥିବାର ଅନୁମିତ ହୁଏ । ତେବେ ଏମାନଙ୍କ ସମ୍ବନ୍ଧରେ କୌଣସି ଉଲ୍ଲେଖନୀୟ କୀର୍ତ୍ତିକଳାପ ଥିବାର ଇତିହାସ ନୀରବ ।

ଏହି ପାଞ୍ଚଶହ ବର୍ଷର ଇତିହାସ କଙ୍ଗୋଦ ରାଜ୍ୟ ପାଇଁ ଏକ ଇତିହାସ ଦୃଷ୍ଟିରୁ ଅନ୍ଧକାରର ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉପରେ

ରାଜବଂଶମାନେ କଳିଙ୍ଗର ଶାସକ ହୋଇଥିବାରୁ ବୋଧହୁଏ ସେହି ବଂଶର ସାମନ୍ତରାଜାମାନେ କଙ୍ଗୋଦର ଶାସନଭାର ନେଇ ଚଳାଇଥିବାର ଅନୁମାନ କରାଯାଏ । କିନ୍ତୁ ଏହା ପ୍ରମାଣ ସାପେକ୍ଷ ନୁହେଁ । ଚୀନ୍ ପରିବ୍ରାଜକ ହୁଏନ୍‌ସାଂଙ୍କ ଲେଖା ଅନୁଯାୟୀ କଙ୍ଗୋଦ ଏକ କ୍ଷୁଦ୍ରରାଜ୍ୟ ଏହା ମହାନଦୀ ଠାରୁ ଋଷିକୁଲ୍ୟା ମଧ୍ୟରେ ପରିବ୍ୟାପ୍ତ ଥିଲା । ବାଶିଷ୍ଠ ବଂଶର ରାଜାମାନେ ପ୍ରଥମେ କଳିଙ୍ଗର ଦକ୍ଷିଣଭାଗକୁ ପଳାଇଆସି କଙ୍ଗୋଦ ରାଜ୍ୟରେ ପ୍ରତିଷ୍ଠା ଅର୍ଜ୍ଜନ କରିଥିବାର ମନେହୁଏ । ଏହିମାନେ ଶାଳିମା ନଗରୀରେ ରାଜଧାନୀ ପ୍ରତିଷ୍ଠା କରିଥିବାର ଅନୁମିତ । ଏହା ଏକ କ୍ଷୁଦ୍ର ଉନ୍ନତ ଅଞ୍ଚଳ ଥିଲା ଓ ଶାଳିମା ନଦୀକୂଳରେ ପ୍ରତିଷ୍ଠିତ ହୋଇଥିଲା । ବୋଧହୁଏ ଏହା ବିରକାଇଠାରୁ ଘଣ୍ଟଶିଳା ପାଦଦେଶମଧ୍ୟରେ କେଉଁ ଏକ ସ୍ଥାନରେ ଗଡିଉଠିଥିଲା ।

ଏହି ସମୟରେ କଳିଙ୍ଗ ଓ କଙ୍ଗୋଦରାଜ୍ୟରେ ୨ଶହ ହିନ୍ଦୁମନ୍ଦିର ଥିବାର ହୁଏନ୍‌ସାଂ ଲେଖିଛନ୍ତି । ବାଣପୁର ଅଞ୍ଚଳର ଦୁଇଟି ଶିବମନ୍ଦିର ମୁଖ୍ୟତଃ ଏହି ସମୟରେ ପ୍ରତିଷ୍ଠିତ ହୋଇଥିବାର ଅନୁମିତ ହୁଏ । ସେହି ଦୁଇଟି ବର୍ତ୍ତମାନ ଘଣ୍ଟଶିଳା ପାଦଦେଶରେ ଥିବା ସିଦ୍ଧେଶ୍ୱର ମନ୍ଦିର ଓ ଜାତୀୟ ରାଜପଥ ପାର୍ଶ୍ୱରେ ଥିବା ଚଣ୍ଡେଶ୍ୱର ମନ୍ଦିର । ଏହି ଦୁଇଟି ମନ୍ଦିର ବାଶିଷ୍ଠ ବଂଶର ରାଜାମାନଙ୍କ କୀର୍ତ୍ତି ବୋଲି କେତେକ ମତଦେଇଥିଲେ ମଧ୍ୟ ଏହାର ସତ୍ୟତା ପ୍ରତିପାଦନ କରିବା ଦୁରୂହ ବ୍ୟାପାର । ଶକ୍ତିବର୍ମା ଓ ଅନନ୍ତବର୍ମା ବୋଧହୁଏ ଏହି ଦୁଇଟି ମନ୍ଦିରର ପ୍ରତିଷ୍ଠାତା ହୋଇପାରନ୍ତି ।

କିମ୍ବଦନ୍ତୀ ଓ ଲୋକକଥାକୁ ମାନ୍ୟତା ଦିଆଗଲେ ଶୁଣାଯାଏ ଯେ ମାଧବ ବର୍ମା ( ବିଷ୍ଣୁକୁଣ୍ଡୀର ରାଜା ) ଯେତେବେଳେ କଳିଙ୍ଗ ଅଧିକାର କଲେ ସେତେବେଳେ କଙ୍ଗୋଦ ମଧ୍ୟ ତାଙ୍କ ଶାସନାଧୀନ ହୋଇଥିଲା । ସେତେବେଳେ ମାଧବ ବର୍ମା କଙ୍ଗୋଦ ରାଜ୍ୟରେ ତାଙ୍କ ପକ୍ଷରୁ ଜଣେ ସାମନ୍ତରାଜାଙ୍କୁ ଶାସନଭାର ଦେଇ ଫେରିଯିବା ବେଳେ ଏ ଅଞ୍ଚଳର କଳା ସ୍ଥାପତ୍ୟ ତାଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ସେତେବେଳେ ଏକ କଦାକାର ମୂର୍ତ୍ତି ଏକ କ୍ଷୀର କୋଳି ଗଛ

ସମ୍ମୁଖରେ ପୂଜାପାଉଥିଲେ । ସେ ଶିବଭକ୍ତ ହୋଇଥିବାରୁ ଏବଂ ଏହି ଠାକୁରାଣୀ ମୂର୍ତ୍ତି ପାର୍ବତୀ ଅବତାର ବୋଲି କେତେକ ପଣ୍ଡିତ ତାଙ୍କୁ କହିଥିଲେ । ଏଣୁ ସେ ଏକ ଶିବ ମନ୍ଦିର ନିର୍ମାଣ କରାଇ ସେହି ମନ୍ଦିର ସମୀପରେ ଆଉ ଏକ ଘର କରି ଠାକୁରାଣୀ ମୂର୍ତ୍ତିକୁ ସ୍ଥାପନ କରିବା ପାଇଁ ସ୍ଥିର କରିଥିଲେ । ଆଜିର ଦକ୍ଷେଶ୍ୱର ମନ୍ଦିର ମାଧବ ବର୍ମାଙ୍କ କୀର୍ତ୍ତି ବୋଲି ଅନେକ ମତ ଦିଅନ୍ତି । ସେହି ଦକ୍ଷେଶ୍ୱର ମନ୍ଦର ନିକଟରେ ସାତବଖରା ଘରେ ହୁଏତ ଉକ୍ତ ଠାକୁରାଣୀ ମୂର୍ତ୍ତିକୁ ଆଣି କିଛିଦିନପାଇଁ ରଖାଇଥିବାର ଅନୁମିତ ହୁଏ ।



(କାରୁକାର୍ଯ୍ୟ ବିମଣ୍ଡିତ ଦକ୍ଷେଶ୍ୱର ମନ୍ଦିର ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସୁରକ୍ଷିତ)

ଏହି ସମୟରେ ଶୈବଧର୍ମର ପ୍ରତିପତ୍ତି ବୃଦ୍ଧିପାଇ ବୌଦ୍ଧଧର୍ମର ଅବକ୍ଷୟ ଘଟିଥିବାର ଇତିହାସ କୁହେ । ଏହାରି ପ୍ରଭାବରେ ମନ୍ଦିର ଗୁଡ଼ିକରେ ବୌଦ୍ଧ ଶ୍ରମଣ ମାନେ ରହୁଥିବାରୁ ( କାରଣ ସେମାନେ ମୂର୍ତ୍ତି ବା ପିତୁଳା ପୂଜାରେ ବିଶ୍ୱାସ କରୁନଥିଲେ ଓ ସନ୍ନ୍ୟାସ ବ୍ରତରେ ଦୀକ୍ଷିତ ହୋଇ ସଂସାରଠାରୁ ଦୂରରେ ଥିଲେ ) ମନ୍ଦିର ଗୁଡ଼ିକରେ ସ୍ଥାନୀୟ ଅଧିବାସୀମାନେ ବିଭିନ୍ନ ଯୌନ-ଉଦ୍ଦୀପକ

ପିତୁଳାମାନଙ୍କୁ ସ୍ଥାପନ କରିଥିବାରୁ ବୌଦ୍ଧ ସନ୍ନ୍ୟାସୀମାନେ ସେ ମନ୍ଦିର ତ୍ୟାଗ କରି ଚାଲିଯାଇଥିବାର ପ୍ରବାଦ ରହିଅଛି । ଅନେକ ବୌଦ୍ଧ ବିହାରର ମାନଙ୍କରେ ଶିବଶକ୍ତି ମୂର୍ତ୍ତି ସ୍ଥାପନ କରାଯାଇଥିଲା । ସେହିଭଳି ମନ୍ଦିର ମାନଙ୍କ ସମ୍ମୁଖରେ ବା ସିଂହଦ୍ୱାରରେ ହାତୀ ଉପରେ ସିଂହ ମୂର୍ତ୍ତି ସବୁସ୍ଥାପନ କରାଗଲା । ହସ୍ତୀ ବୌଦ୍ଧ ଧର୍ମର ପ୍ରତୀକ ହୋଇଥିବାରୁ ସିଂହ ଦ୍ୱାରା ଏହା ପ୍ରତିହତ ହେଲା ବୋଲି ଅନେକଙ୍କ ବିଶ୍ୱାସ ହେଲା । ଏଣୁ ଯେଉଁ ମନ୍ଦିର ସିଂହ ଦ୍ୱାରରେ ହାତୀ ଉପରେ ସିଂହାରୂଢ ହୋଇଛି ବୋଧହୁଏ ସେହି ମନ୍ଦିର ଗୁଡ଼ିକ ଅତୀତରେ ବୌଦ୍ଧ ମନ୍ଦିର ଥିବାର ମନେହୁଏ । କଙ୍ଗୋଦ ରାଜ୍ୟର ସେ ସମୟର ଯେଉଁ ପ୍ରସିଦ୍ଧ ଶିବ ମନ୍ଦିର ଗୁଡ଼ିକ ପୁନର୍ବାର ଗଢିଉଠିଲା, ସେ ଗୁଡ଼ିକ ହେଲା, ଶରଣକୁଳର ଲଡୁବାବା ମନ୍ଦିର, ବୁଦ୍ଧଖୋଲରେ ଥିବା ଶିବମନ୍ଦିର, ବାଣପୁରର ବୌଦ୍ଧେଶ୍ୱର ମନ୍ଦିର, ଖଲ୍ଲିକୋଟର ସକଳେଶ୍ୱର ଓ ନିର୍ମଳ ଝରର ଶିବ ମନ୍ଦିର ପ୍ରଭୃତି ।

# କଙ୍ଗୋଦରେ ଶୈଳୋଦ୍‌ଭବ ବଂଶର ରାଜତ୍ୱ ( ୫୭୦ ରୁ ୭୩୫ )

ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ଆକ୍ରମଣ ଓ ତଦ୍‌ଜନିତ ବିଶୃଙ୍ଖଳାର ସୁଯୋଗ ନେଇ ପୁଳିନ୍ଦ ସେନ ନାମକ ଜଣେ ଦୁଃସାହସୀ ରାଜା କଳିଙ୍ଗ ଅଧିକାର କରିଥିବାର ଅନୁମିତ । ଏହାଙ୍କ ଉତ୍ତରାଧିକାରୀମାନେ କଳିଙ୍ଗର ଉତ୍ତରାଞ୍ଚଳକୁ ଚାଲିଆସି କଙ୍ଗୋଦ ରାଜ୍ୟରେ ଆଧିପତ୍ୟ ବିସ୍ତାର କରିଥିଲେ । କିମ୍ବଦନ୍ତୀ କହେ, ପୁଳିନ୍ଦସେନ ଜଣେ ଭଲ ଉତ୍ତରାଧିକାରୀ ପାଇଁ ବହୁ ଯଜ୍ଞ, ହୋମ କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିଥିଲେ । ଏଣୁ ବ୍ରହ୍ମା ପାହାଡ଼ ଫଟାଇ ଜଣେ ରାଜପୁତ୍ର ଜନ୍ମ ଦେଇଥିବାରୁ ସେମାନେ ଶୈଚଳାଦ୍‌ଭବ ବୋଲାଇଲେ । ଏହି ରାଜାମାନଙ୍କ ସମ୍ବନ୍ଧରେ ଆଜି ପର୍ଯ୍ୟନ୍ତ ୧୪ଟି ତାମ୍ର ଶାସନ ମିଳିଅଛି । (ମହତାବଙ୍କ ଉତ୍କଳ ଇତିହାସ) ଏମାନେ ନିଜକୁ ଧର୍ମରାଜ ଆଖ୍ୟା ମଧ୍ୟ ଦେଇଥିଲେ । ଏହି ବଂଶରେ କ୍ରମାନ୍ୱୟରେ ୫ଜଣ ରାଜା କଙ୍ଗୋଦ ଶାସନ କରିଥଲେ । ସେମାନେ ସମସ୍ତେ ଜ୍ଞାନୀ ଓ ପଣ୍ଡିତ ଥିଲେ । ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭରେ ଭୌମକର ବଂଶର ଉନ୍ମତ୍ତକେଶରୀ କଙ୍ଗୋଦ ଅଧିକାର କରିଥିବା ପର୍ଯ୍ୟନ୍ତ ଏମାନେ ଶାସନ କରୁଥିଲେ ।

୧) ଅରଣଭୀତ ୨) ସୈନଭୀତ ବା ମାଧବରାଜ ୧ମ ୩) ଅଯଥୋଭୀତ ୧ମ ୪) ସୈନ୍ୟଭୀତ ସ୍ୱୟଂ ବିଶ୍ୱ ମାଧବରାଜ ଦ୍ୱିତୀୟ ୫) ଅଯୋଥଭୀତ ୨ୟ ବିଶ୍ୱ ମାଧବରାଜ ୧ମ ୬) ମାଧବରାଜ ୩ୟ ୭) ଧର୍ମରାଜ ୮) ମଧ୍ୟମରାଜ ୨ୟ ୯) ଅଲପରାଜ ୧୦) ଯୁବରାଜ ମଧ୍ୟମରାଜ ।

ଗୁପ୍ତ ବଂଶର ରାଜାମାନେ ଯେପରି ଗୁପ୍ତ ସଂଜ୍ଞା ଲଗାଇ ପରିଚିତ, ସେହିଭଳି ଶୈଳୋଦ୍‌ଭବମାନେ ସେମାନଙ୍କ ନାମ ସହ ଅଭୟ ଶବ୍ଦ ଯୁକ୍ତଥିଲେ । ଏହି ବଂଶର ମାଧବରାଜ ୨ୟ ସବୁଠାରୁ କୀର୍ତ୍ତିମାନ୍ ରାଜା ଥିବାର ଇତିହାସ

କୁହେ । ଏହାଙ୍କ ସମୟରେ ବହୁଜନହିତକର କାର୍ଯ୍ୟ କରାଯିବା ସଙ୍ଗେ ସଙ୍ଗେ ଅନେକ ମନ୍ଦିରର ସଂସ୍କାର ସହ ଶିବଲିଙ୍ଗ ଉପସ୍ଥାପନା କରାଯାଇଥିବାର ଅନୁମିତ । ଏହି ସମୟର ବୌଦ୍ଧମାନଙ୍କ ପ୍ରତିପତ୍ତି କମି ଶୈବଧର୍ମର ଅଭିବୃଦ୍ଧି ଘଟିଥିଲା । ଅନେକ ବୌଦ୍ଧ ବିହାରରେ ଶିବ ଉପାସନା କରାଯାଇଥିଲା ।

କେତେକଙ୍କ ମତରେ ମାଧବରାଜ ୨ୟଙ୍କ ସମୟରେ ଦକ୍ଷପ୍ରଜାପତି ମନ୍ଦିର ପରିକଳ୍ପନା କରାଯାଇ ନିର୍ମାଣକାର୍ଯ୍ୟ ଆରମ୍ଭ କରାଯାଇଥିଲା ।

ଏହି ବଂଶର ରାଜାମାନେ ଅତ୍ୟନ୍ତ ପରାକ୍ରମୀ ତଥା ବଳଶାଳୀ ଥିଲେଓ ଅନେକ ସମୟ ଯୁଦ୍ଧରେ ବ୍ୟାପୃତ ରହି କଙ୍ଗୋଦର ମର୍ଯ୍ୟାଦା ବୃଦ୍ଧି କରିଥିଲେ । ଏହି ବଂଶର ପ୍ରଥମ ରାଜା ଅରଣଭୀତ ବାରମ୍ବାର ଶତ୍ରୁମାନଙ୍କୁ ଧ୍ୱଂସ କରି ନାରୀମାନଙ୍କ ଚକ୍ଷୁରୁ ଅହର୍ନିଶ ଲୋତକ ବର୍ଷଣ କରିଥିଲେ । ସୈନ୍ୟଭୀତ ପ୍ରଥମଙ୍କର ଅନେକ ଗଜାରୋହୀ ସୈନ୍ୟ ଥିଲେ ଓ ପରାକ୍ରମୀ ରାଜା ହିସାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ରଣଦୁର୍ଦ୍ଧର୍ଷ ମଧ୍ୟମରାଜ ୧ମ ବହୁଦିନ ଧରି ଶାସନ କରିଥିଲେ ଓ ତାଙ୍କ ସମୟରେ ଅଶ୍ୱମେଧ, ବାଜପେୟ, ମହାମଖ ଯଜ୍ଞ ଅନୁଷ୍ଠିତ ହୋଇଥଇଲା । ଏହାଙ୍କର ଦୁଇପୁଅଙ୍କ ଭିତରେ ବିବାଦ ଘଟି କନିଷ୍ଠପୁତ୍ର ମାଧବରାଜ ୩ୟ କଙ୍ଗୋଦର ସିଂହାସନ ଆରୋହଣ କରିଥିଲେ । କିନ୍ତୁ ପରେ ନିଜର ବଡ଼ଭାଇ ଧର୍ମରାଜ କଙ୍ଗୋଦକୁ ପୁନର୍ବାର ଆକ୍ରମଣ କରି ମାଧବରାଜ ୩ୟଙ୍କୁ ପରାସ୍ତ କଲେ ଓ କଙ୍ଗୋଦର ଶାସନଭାର ନେଲେ । ଏହି ରାଜା ଅତ୍ୟନ୍ତ ପରାକ୍ରମଶାଳୀ ଓ ଧର୍ମପରାୟଣ ଥିଲେ । ସେ ଏକାଧାରରେ ବିଜ୍ଞ, ପଣ୍ଡିତ ତଥା ଯଜ୍ଞ ହୋମର ଆୟୋଜନ କରି କଙ୍ଗୋଦର ଦୀପ୍ତି ବଢାଇଥିଲେ । ତାଙ୍କ ରାଜତ୍ୱ କାଳରେ ପ୍ରଜାମାନେ ଅତ୍ୟନ୍ତ ସୁଖସ୍ୱାଚ୍ଛନ୍ଦ୍ୟରେ ଦିନ କାଟୁଥିଲେ ।

ଶୈଳୋଦ୍ଭବ ରାଜାମାନଙ୍କ ସମୟରେ କଙ୍ଗୋଦ ରାଜ୍ୟର ବାଣିଜ୍ୟ କାରବାର ମୁଖ୍ୟତଃ ଜାଭା, ସୁମାତ୍ରା, ସୁବର୍ଣ୍ଣଦ୍ୱୀପ ପ୍ରଭୃତିରେ ବହୁଳ ଭାବରେ ବିସ୍ତାର ଲାଭ କରିଥିଲା ।

ଗୋପୀନାଥପୁରର ବୋଇତହୁଡ଼ା ପର୍ଯ୍ୟନ୍ତ ଚିଲିକା ବିସ୍ତାର କରିଥିବାରୁ ଏହିଠାରୁ କ୍ଷୁଦ୍ର କ୍ଷୁଦ୍ର ଡ଼ଙ୍ଗା ସାହାଯ୍ୟରେ ବାଣିଜ୍ୟ ସାମଗ୍ରୀ ପାଲୁର ବା ଦନ୍ତଗୁର ବନ୍ଦର ପର୍ଯ୍ୟନ୍ତ ନିଆଯାଇ ସେଠାରେ ମହକୁଦ ଥିବା ବାଣିଜ୍ୟ ତରୀରେ ଲଦାଯାଉଥିଲା । କଙ୍ଗୋଦର ବଣିକମାନେ ସେହି ପାଲୁର ବନ୍ଦରଠାରୁ ସମୁଦ୍ର ପଥରେ ବାଣିଜ୍ୟ ତରୀ ନେଇ ଯାଉଥିଲେ ।

ଶାଳିମା ନଗରୀ ଏହି ରାଜାମାନଙ୍କର ମଧ୍ୟ ରାଜଧାନୀ ଥିଲା ଓ ଏହା ଏକ ଉନ୍ନତ ନଗରୀ ହିସାବରେ ମାନ୍ୟତା ପାଇଥିଲା । ଏହି ରାଜାମାନଙ୍କର ବହୁ ଅଶ୍ୱାରୋହୀ, ଗଜାରୋହୀ ସୈନ୍ୟ ଥିଲେ ।

ପ୍ରବାଦ କୁହେ, ଦକ୍ଷେଶ୍ୱର ମନ୍ଦିର ଭିତରେ ଥିବା ବାଙ୍କି ଚତୁଃସୀମାରେ ମଧ୍ୟମରାଜ ଅଶ୍ୱମେଧ ଯଜ୍ଞ କରାଇଥିଲେ । ଏହି ଯଜ୍ଞରେ ବହୁ ଦୂରଦୂରାନ୍ତର ପଣ୍ଡିତ,ମୁନିଋଷି, ଦେବଜ୍ଞମାନେ ଯୋଗ ଦେଇ ଯଜ୍ଞ କରିଥିଲେ । ସେହିଭଳି ନିର୍ମଳ ଝର ନିକଟରେ କେଉଁ ଏକ ସ୍ଥାନରେ ବାଜପେୟ ଯଜ୍ଞ ଓ ଶରଣକୂଳଠାରେ ମହାମଖ ଯଜ୍ଞ ଅନୁଷ୍ଠିତ ହୋଇଥିଲା ବୋଲି ଲୋକମାନଙ୍କଠାରୁ ଶୁଣାଯାଏ । ଶାଳିମାନଗରୀ ଠାରୁ ଏକ ରାସ୍ତା ଦନ୍ତପୁର ପର୍ଯ୍ୟନ୍ତ ରହିଥିଲା ଓ ଏହି ରାସ୍ତାରେ ରାଜା ଓ ସୈନ୍ୟମାନେ ପରିଚାଳିତ ହେଉଥିଲେ । ବୋଧହୁଏ ଏହି ରାସ୍ତା ଭାଲେରୀର ଉତ୍ତର ସୀମାରେ ବିସ୍ତୀର୍ଣ୍ଣ ଥିଲା । ଗଜାରୋହୀ ସୈନ୍ୟମାନଙ୍କର ହସ୍ତୀମାନଙ୍କୁ ଏହି ରାସ୍ତା ସମୀପରେ ଏକ ବିସ୍ତୀର୍ଣ୍ଣ ଜାଗାରେ ରଖାଯାଇଥିଲା । ବୋଧହୁଏ ଆଜିର ହାତୀବାରି ଗ୍ରାମ ତାହାର ପ୍ରମାଣ ହୋଇପାରେ । କେତେଙ୍କ ମତରେ ଏହି ରାଜାମାନଙ୍କ ଦ୍ୱିତୀୟ ରାଜଧାନୀ ପାକୁର ବନ୍ଦରଠାରେ ଅବସ୍ଥିତ ଥିଲା । ଏଣୁ ରାଜା କେତେବେଳେ ଶାଳିମାନଗରୀରେ ତ ଆଉ କେତେବେଳେ ବାଣିଜ୍ୟ ତଦାରଖ ପାଇଁ ପାଲୁରଠାରେ ଉପସ୍ଥିତ ରହୁଥିଲେ । କଙ୍ଗୋଦ ରାଜ୍ୟର ବଣିକମାନେ ମଣି, ମୁକ୍ତା ଓ କଉଡ଼ି ନେଇ ବିଶେଷ ଭାବେ ବାଣିଜ୍ୟ କରୁଥିଲେ ।

ଏ ରାଜ୍ୟ ହସ୍ତୀମାନଙ୍କ ପାଇଁ ପ୍ରସିଦ୍ଧ ଥିଲା । ଉପରୋକ୍ତ ବିଷୟଗୁଡ଼ିକ ହୁଏନ୍‌ସାଙ୍କ ବିବରଣୀରେ ପ୍ରତିପାଦିତ ହୋଇଥିବାରୁ ଏହାର ସତ୍ୟତା ନିଶ୍ଚିତ ଭାବରେ ରହିଅଛି ।

ଏହି ରାଜବଂଶର ରାଜା ଅଳପରାଜଙ୍କୁ ପରାସ୍ତ କରି ଭୌମଙ୍କର ବଂଶର ରାଜା ଉନ୍ମତ୍ତକେଶରୀ କଙ୍ଗୋଦ ଅଧିକାର କରିଥିବାର ଅନୁମେୟ । ଅନ୍ୟ କେତେକ କୁହନ୍ତି ଚତୁର୍ଦ୍ଦିଗରୁ ଆକ୍ରମଣର ସମ୍ମୁଖୀନ ହୋଇ ଶୈଳୋଦ୍‌ଭବ ବଂଶର ରାଜପରିବାର ପାଲୁର ବନ୍ଦର ଦେଇ ସିଂହଳ ଓ ଜାଭା, ସୁମାତ୍ରା ଦ୍ୱୀପକୁ ବାଣିଜ୍ୟ ତରୀ ସହିତ ଚାଲିଯାଇଥିଲେ ଓ ପରେ ଶୈଳେନ୍ଦ୍ର ରାଜବଂଶ ପ୍ରତିଷ୍ଠା କରି ଜାଭା-ସୁମାତ୍ରା-ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପରେ କଳିଙ୍ଗ ରାଜ୍ୟ ପ୍ରତିଷ୍ଠା କରିଥିଲେ ।

ବୋଧହୁଏ ଏହି ସମୟରେ ଅନେକ ବୌଦ୍ଧପୀଠ ଶିବମନ୍ଦିରରେ ପରିଣତ ହୋଇଥିଲା । ଘଣ୍ଟେଶିଳାର ବୌଦ୍ଧେଶ୍ୱର ମନ୍ଦିର ଏହାର ଏକ ଉଦାହରଣ ହୋଇପାରେ ।

## କଙ୍ଗୋଦରେ ଭୌମକର ବଂଶର ରାଜତ୍ୱ

ଏହି ବଂଶର ରାଜତ୍ୱ ୭୩୫ ରୁ ୯୫୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କଙ୍ଗୋଦ ରାଜ୍ୟରେ ପ୍ରତିଷ୍ଠିତ ହୋଇଥିବାର ଇତିହାସ ସ୍ୱୀକୃତ । ଏହି ସମୟରେ ବ୍ରାହ୍ମଣ୍ୟ ଧର୍ମର ପ୍ରତିପତ୍ତି ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବହୁ ଶିବ ମନ୍ଦିର ପ୍ରତିଷ୍ଠିତ ହୋଇଥିବାର ସ୍ପଷ୍ଟ ଅନୁମେୟ ।

ଏହି ବଂଶର ରାଜାମାନଙ୍କ ରାଜଧାନୀ ଗୁହେଶ୍ୱର ପାଟକ ବା ଆଜିର ଯାଜପୁର ଥିଲା । ଏହାଙ୍କ ସମୟରେ ରାଜ୍ୟକୁ ଉତ୍ତର ତୋଷାଳୀ, ଦକ୍ଷିଣ ତୋଷାଳୀ ଓ କଙ୍ଗୋଦ ରାଜ୍ୟ ରୂପରେ ୩ଭାଗ କରି ଶାସନ କରାଯାଉଥିଲା । ଏହି ୩ପ୍ରଦେଶରେ ଏହି ବଂଶ ରାଜାମାନଙ୍କ ପ୍ରତିନିଧି ବା ସାମନ୍ତ ରାଜାମାନେ ରାଜୁତି କରୁଥିବାର ମନେହୁଏ । ଏହି ସମୟରେ ମଠ ଓ ମନ୍ଦିରଗୁଡ଼ିକ ଚରମ ଉନ୍ନତି ଲାଭ କରିଥିଲା । ସେତେବେଳେ ଅଧିକାଂଶ ମଠ ଓ ମନ୍ଦିର ଚାଳଛପର ଘର ଥିଲା ଓ ଆଗରେ ସୁନ୍ଦର ମଣ୍ଡପ ସବୁ ଶୋଭାପାଉଥିଲା ।

ଏହି ବଂଶର ରାଜାମାନେ ନାଗବଂଶ, ଭଞ୍ଜ ବଂଶ, ବିରାଟ ବଂଶ ରାଜାମାନଙ୍କ ସହ ଭଲ ସମ୍ପର୍କ ରକ୍ଷା କରି ସମଗ୍ର କଙ୍ଗୋଦ-କଳିଙ୍ଗ ଅଞ୍ଚଳରେ ଶାନ୍ତି ଓ ମୈତ୍ରି ସ୍ଥାପନ କରିଥିଲେ । ଏହି ବଂଶର ବିଶେଷତ୍ୱ ହେଲା ଯେ ରାଣୀମାନଙ୍କୁ ଉତ୍ତରାଧିକାରୀ ଭାବରେ ଶାସନ ଭାର ଦିଆଯାଉଥିଲା । ସେମାନେ ଅତ୍ୟନ୍ତ ବିଦୁଷୀ ଥିଲେ । ଏହାଙ୍କ ସମୟରେ ଭୌମାବ୍ଦ ପ୍ରଚଳିତ ହୋଇଥିବାର ଇତିହାସରୁ ପ୍ରମାଣିତ । ଉପରୋକ୍ତ ବିଷୟଗୁଡ଼ିକ ବହୁ ସ୍ଥାନରୁ ମିଳିଥିବା ତାମ୍ର ଶାସନଗୁଡ଼ିକରୁ ସ୍ପଷ୍ଟ ଅନୁମେୟ । ସେହି ତାମ୍ର ଶାସନ ମଧ୍ୟରେ ଧଉଳି ଗୁମ୍ଫା ଶିଳାଲେଖ, ଢେଙ୍କାନାଳ ଶାନ୍ତିଗ୍ରାମ, କୁମୁରାଙ୍ଗ ଧରାକୋଟ ତାମ୍ର ଶାସନ ଇତିହାସରେ ପ୍ରକାଶିତ ।

ପୂରାଣରେ ବର୍ଣ୍ଣିତ ଅଛି ଯେ ଗୁହ ନାମକ ରାଜା କଳିଙ୍ଗ, ମାହିଷ୍ୟ ଓ ମାହେନ୍ଦ୍ର, ଭୌମଜାତିମାନଙ୍କ ରକ୍ଷାକର୍ତ୍ତା ଥିଲେ। ବୋଧହୁଏ ସେହି ଗୁହ ରାଜାଙ୍କ ନାମରେ ଗୁହେଶ୍ୱର ପାଟକ ହୋଇଥିବାର ଅନୁମେୟ। ଭୌମମାନେ ଆଜିକାଲିର ଭୂୟାଁ ଜାତି ଅଟନ୍ତି। ଏମାନେ ସଭ୍ୟ, ଶିକ୍ଷିତ ଓ ଧନଶାଳୀ ଅଟନ୍ତି। ଏହି ଭୂୟାଁମାନେ ବିଶେଷତଃ ଉତ୍ତର ଓଡ଼ିଶାର ପ୍ରାଚୀନ ସମ୍ଭ୍ରାନ୍ତ ରାଜା ଓ ଜମିଦାର ଥିଲେ। ଏମାନେ ସମସ୍ତେ ଭୌମ ବଂଶର ଦାୟାଦ ଅଟନ୍ତି ବୋଲି ଇତିହାସରୁ ପ୍ରମାଣିତ। କ୍ରମାନ୍ୱୟରେ ଏହି ବଂଶର ଯେଉଁମାନେ ଶାସନ କରୁଥିଲେ ସେମାନେ ହେଲେ:- ତଥାଗତ ଶିବକର ( ୧ମ ) ଉନ୍ମତକେଶରୀ - ତଥାଗତ ଶୁଭାକର ( ୧ମ ) - ରାଣୀ ମାଧବୀଦେବୀ ( ମାଧବେଶ୍ୱର ମନ୍ଦିର ଯାଜପୁର ପ୍ରତିଷ୍ଠା କରିଥିଲେ )- ଶିବକର ୨ୟ - ଶୁଭାକର ୨ୟ - ଶୁଭାକର ୩ୟ, ତ୍ରିଭୁବନ ମହାଦେବୀ, ଶୁଭାକର ୪ର୍ଥ, ଶିବକର ୩ୟ-ପୃଥ୍ୱୀ ମହାଦେବୀ-ଶୁଭାକର୫ମ-ଗୌରୀ ମହାଦେବୀ ଓ ଦଣ୍ଡୀ ମହାଦେବୀ

ଶିବକର ୧ମ ଏହି ବଂଶର ପ୍ରଥମ ପରାକ୍ରମୀ ରାଜା ଅଟନ୍ତି। କଙ୍ଗୋଦର ଶୈଳୋଦ୍‌ଭବ ରାଜାମାନେ ଓ କଳିଙ୍ଗରେ ଗଙ୍ଗବଂଶର ରାଜାମାନେ ଦୁର୍ବଳ ହୋଇପଡ଼ିବା ସୁଯୋଗରେ (ଉନ୍ମତ୍ତକେଶରୀଙ୍କ ଅନ୍ୟନାମ) ସେ କଳିଙ୍ଗ ଓ କଙ୍ଗୋଦ ଅଧିକାର କରିଥିବାର ଅନୁମିତ।

ଏହାଙ୍କ ପରେ ଶୁଭାକରଦେବ ୧ମ ରାଜଗାଦି ଆରୋହଣ କରିଥିଲେ। ତାଙ୍କର ରାଣୀ ମାଧବୀଦେବୀ ପ୍ରଥମେ ଶିବଭକ୍ତ ହୋଇ ଯାଜପୁରରେ ଏକ ଶିବମନ୍ଦିର ନିର୍ମାଣ କରାଇଥିବାରୁ ଏହି ମନ୍ଦରର ନାମକରଣ ମାଧବେଶ୍ୱର ରଖାଯାଇଥିଲା।

ପ୍ରାଚୀନ ମନ୍ଦିର ମାନଙ୍କରୁ ଓ ମୂର୍ତ୍ତିତତ୍ତ୍ୱ ଅନୁମୋଦିତ ଗଠନ ପ୍ରଣାଳୀରୁ ଜଣାଯାଏ ଯେ-ଏହି ରାଜାମାନଙ୍କ ରାଜତ୍ୱ କାଳରେ ଶିବପୂଜା, ଶକ୍ତିପୂଜା ତଥା

ତନ୍ତ୍ରପୂଜାର ପ୍ରାଧାନ୍ୟ ବୃଦ୍ଧି ପାଇଥିଲା । ଭୌମ ରାଜତ୍ୱର ଶେଷବେଳକୁ ବୌଦ୍ଧଧର୍ମ ମନ୍ତ୍ରଯାନ, ବଜ୍ରଯାନ ଆକାର ଧାରଣ କରି ତନ୍ତ୍ରଯାନ ନାମରେ ଲୋକପ୍ରିୟ ହେବାକୁ ଲାଗିଲା ।

ଭୁବନେଶ୍ୱରରେ ଥିବା ଗୌରୀ ମନ୍ଦିର, ମୋହିନୀ ମନ୍ଦିର ଓ ହୀମରାଜପୁରର ଚଉଷଠି ଯୋଗିନୀ ମନ୍ଦିର-ଏହି ରାଜାମାନଙ୍କ କୀର୍ତ୍ତି ଭଳି ମନେହୁଏ ।

ଏହି ସମୟରେ ବାଣପୁର ଭଗବତୀ ମନ୍ଦିର ଏକ ତନ୍ତ୍ର କ୍ଷେତ୍ରରୂପରେ ଖ୍ୟାତି ଅର୍ଜନ କରିଥିବାର ମନେହୁଏ । ଏହି ଦେବୀ ଏକ କ୍ଷୀର କୋଳି ଗଛ ମୂଳରେ ପୂଜା ପାଉଥିବାର କିମ୍ବଦନ୍ତୀ କୁହେ । ନିକଟବର୍ତ୍ତୀ ଗ୍ରାମର ଜଣେ ବ୍ରାହ୍ମଣ ଏହି ଦେବୀ ପୀଠରେ ତନ୍ତ୍ରସାଧନା କରି ଅତ୍ୟନ୍ତ ଯଶ ଅର୍ଜନ କରିଥିବାର ଲୋକକଥାରୁ ଅନୁମେୟ ।

ଗୌରୀ ମହାଦେବୀଙ୍କ ରାଜତ୍ୱ କାଳରେ ଏହି ତନ୍ତ୍ର ପୀଠରେ ଠାକୁରାଣୀ ମୂର୍ତ୍ତିଙ୍କ କଦାକାର ତଥା ଭୟଙ୍କର ରୂପ ଦର୍ଶନରେ ଅନେକ ଲୋକ ମୃତ୍ୟୁ ଲଭୁଥିବାର ହୃଦୟଙ୍ଗମ କରି ଏହି ଠାକୁରାଣୀଙ୍କ ମୁଖମଣ୍ଡଳରେ ଏକ ଲୁହାର ବଳା ଲଗାଇ ସିନ୍ଦୂର ଲେପନ କରାଯାଇଥିବାର ଅନେକ ମତ ଦିଅନ୍ତି । ତେବେ ଏ ସମ୍ବନ୍ଧରେ ଲୋକକଥା ବା କିମ୍ବଦନ୍ତୀ ଛଡ଼ା ଐତିହାସିକ ତଥ୍ୟ ମିଳିବା ଦୁରୂହ ବ୍ୟାପାର ।

ଶୁଭାକରଙ୍କ ପରେ ଶିବକର ୨ୟ ମହାରାଜାଧିରାଜ ପରମେଶ୍ୱର ଉପାଧିରେ ଭୂଷିତ ହୋଇ ରାଜଗାଦୀ ଆରୋହଣ କରିଥିଲେ । ତାଙ୍କପରେ ଶୁଭାକର ଦେବ ୨ୟ ଓ ତୃତୀୟ ରାଜତ୍ୱ କରିଥିଲେ । ତାଙ୍କ ରାଣୀଙ୍କ ନାମ ତ୍ରିଭୁବନ ଦେବୀ ଥିଲା । ସେ କିଛିକାଳ ରାଜ୍ୟ ଶାସନ କରି ଶାନ୍ତିକର ୨ୟଙ୍କ ଉପରେ ରାଜ୍ୟଭାର ଅର୍ପଣ କରି ସନ୍ନ୍ୟାସିନୀ ହୋଇଯାଇଥିଲେ । ଏହି ତ୍ରିଭୁବନ

ମହାଦେବୀଙ୍କ ସମୟରେ ଏ ଅଞ୍ଚଳରେ ଅନେକ ଶିବ ମନ୍ଦିର ଓ ତନ୍ତ୍ର ପୀଠ ଗଢି ଉଠିଥିଲା । ଉମାମହେଶ୍ୱରଙ୍କ ମନ୍ଦିର ବୋଧହୁଏ ସେହି ସମୟର ଭଳି ମନେହୁଏ । ସେତେବେଳେ ମନ୍ଦିର ଗୁଡ଼ିକ ମାଟି କାଛ ଘେରା ଛପର ଘର ଥିଲା ଓ ପ୍ରତ୍ୟେକ ମନ୍ଦିର ଆଗରେ ପ୍ରସ୍ତର ନିର୍ମିତ ମଣ୍ଡପ ସବୁ ନିର୍ମାଣ କରାଯାଇଥିଲା, ଯେଉଁଠାରେ ଲୋକମାନେ ବସି ପୂଜା ତଥା ଉପସନା କରୁଥିଲେ ।

ତ୍ରିଭୁବନ ମହାଦେବୀଙ୍କ ପରେ ଆଉ ଦୁଇଜଣ ବିଦୁଷୀ ମହାରାଣୀ ରାଜ୍ୟର ଶାସନ ଭାର ନେଇଥିଲେ । ସେମାନେ ହେଲେ ଗୌରୀ ମହାଦେବୀ ଓ ଦଣ୍ଡୀମହାଦେବୀ । ଦଣ୍ଡୀ ମହାଦେବୀ କୁମାରାଙ୍ଗ ବ୍ରାହ୍ମଣ ଶାସନ ବସାଇଥିବାର ଅନେକ ମତ ଦିଅନ୍ତି । କୁମାରାଙ୍ଗ ଗ୍ରାମରୁ ମିଳିଥିବା ଏକ ତାମ୍ର ଫଳକରୁ ଏହା ପ୍ରମାଣିତ । କୁମାରାଙ୍ଗ ଭଳି ଅନେକ ବ୍ରାହ୍ମଣ ଶାସନ କଙ୍ଗୋଦ ରାଜ୍ୟରେ ଏହି ଭୌମକର ରାଜତ୍ୱବେଳେ ପ୍ରତିଷ୍ଠିତ ହୋଇଥିବାର ଐତିହାସିକମାନଙ୍କ ମତ । ତେବେ ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ଗଞ୍ଜାମ ଆଠଗଡ଼, ବୁଗୁଡ଼ା ତଥା ଖଲ୍ଲିକୋଟ ଅଞ୍ଚଳରେ ପ୍ରତିଷ୍ଠିତ ହୋଇଥିଲା ।

ଏହି ରାଜ୍ୟର ଚତୁର୍ଦ୍ଦିଗକୁ ଯିବାପାଇଁ ଏକ କେନ୍ଦ୍ରସ୍ଥଳୀ ରୂପେ ମଧ୍ୟଖଣ୍ଡ ( ଆଜିର ମଝିଆଖଣ୍ଡ ) ବୋଧହୁଏ ପ୍ରସିଦ୍ଧ ଥିଲା । ସମସ୍ତ ଅଞ୍ଚଳରୁ ଏହି କେନ୍ଦ୍ରସ୍ଥଳ ରାଜନଗରୀକୁ ରାସ୍ତା ଥିବାର ଅନୁମିତ ହୁଏ ।

ଭୌମକରବଂଶର ଶାସନବେଳେ କଙ୍ଗୋଦରାଜ୍ୟର ଶାସନ ଅତ୍ୟନ୍ତ ଉଚ୍ଚଧରଣର ଥିବାର ଐତିହାସିକମାନେ ବର୍ଣ୍ଣନା କରିଛନ୍ତି ।

ମହାରାଜାଧିରାଜ କଙ୍ଗୋଦର ମୂଳ ରାଜାଥିଲେ ଓ ଅନ୍ୟାନ୍ୟ କ୍ଷୁଦ୍ର ପ୍ରଦେଶରେ ମହାସାମନ୍ତମାନେ ରାଜତ୍ୱ କରୁଥିଲେ । ବୋଧହୁଏ ଏହି ମହାସାମନ୍ତ ମାନେ ମୂଳରାଜବଂଶର ଭାଇବିରାଦରୀ ଅଟନ୍ତି । ତାଙ୍କ ତଳେ ମହାରାଜା ପଦବୀଯୁକ୍ତ ଶାସକମାନେ କ୍ଷୁଦ୍ର, କ୍ଷୁଦ୍ର ଅଞ୍ଚଳର ଦାୟିତ୍ୱରେ ଥିଲେ ।

ପରବର୍ତ୍ତିକାଳରେ ବୋଧହୁଏ ଏମାନେ ଜମିଦାର ଓ କ୍ଷୁଦ୍ରରାଜ୍ୟର ରାଜା ବୋଲାଇଥିଲେ । ଏବେମଧ୍ୟ ସାମନ୍ତ ସଂଜ୍ଞାଧାରୀ ଅନେକ ଉଚ୍ଚବର୍ଗର ଲୋକମାନଙ୍କୁ ଦେଖାଯାଏ । ରାଜାଙ୍କୁ ସାହାଯ୍ୟ କରିବା ପାଇଁ ଯେଉଁ ମୁଖ୍ୟ ରାଜ କର୍ମଚାରୀ ଥିଲେ ସେମାନଙ୍କୁ ବିଷୟପତି କୁହାଯାଉଥିଲା । ବୋଧହୁଏ ସେମାନଙ୍କ ବଂଶଧରମାନେ ଏବେ ମଧ୍ୟ ପତିନାମଧାରୀ ବ୍ରାହ୍ମଣ ଅଟନ୍ତି । ସେହିଭଳି ଆରକ୍ଷୀ ଅଧ୍ୟକ୍ଷଙ୍କୁ ( ପୋଲିସ୍ ) ଦଣ୍ଡପାଟ କୁହାଯାଉଥିଲା ଓ ନିମ୍ନତମ ପୋଲିସ୍ କର୍ମଚାରୀମାନଙ୍କୁ ଚାଟ ଓ ଭାଟ କୁହାଯାଉଥିଲା । ଆଜିର ଭାଟପଡ଼ା ନାମଧେୟ ଗ୍ରାମଗୁଡ଼ିକରେ ବୋଧହୁଏ ସେତେବେଳେ ଏହି ପୋଲିସ୍ କର୍ମଚାରୀମାନେ ବିଶେଷଭାବରେ ରହୁଥିଲେ ।

ସେହିଭଳି ପ୍ରତ୍ୟେକ ଗ୍ରାମମାନଙ୍କରେ ଗ୍ରାମପ୍ରଧାନଙ୍କୁ ବିଷୟଭୋଗୀ, ଅଫିସ୍ କାଗଜପତ୍ର ରଖୁଥିବା ଲୋକଙ୍କୁ ପୁସ୍ତକପାଳ ( ଦୁର୍ଗସ୍ଥିତ ସେନାମାନଙ୍କୁ କଟୁଆଳ କୁହାଯାଉଥିଲା ), ସେହିଭଳି ରାଜପରିବାର ଯୁବରାଜଙ୍କୁ କୁମାର ଓ ଅନ୍ୟମାନଙ୍କୁ ରାଜପୁତ୍ର କୁହାଯାଉଥିଲା ।

# ଭୌମକରବଂଶର ପତନପରେ କଙ୍ଗୋଦର ବିଲୟ ଓ କ୍ଷୁଦ୍ର ବଙ୍କାଡ଼ ରାଜ୍ୟର ସୃଷ୍ଟି

ଭୌମକରବଂଶର ଶେଷ ଶାସକ ହେଉଛନ୍ତି ଧର୍ମ ମହାଦେବୀ । ଏହାଙ୍କ ପରେ ଭୌମକର ରାଜତ୍ବର ପତନ ଘଟିଲା ଓ ବିଭିନ୍ନ ପ୍ରଦେଶଗୁଡ଼ିକର ମହାସାମନ୍ତ ମାନେ କଳହରେ ବ୍ୟାପୃତ ହୋଇ ପରସ୍ପର ସ୍ୱାଧୀନତା ଘୋଷଣା କଲେ । ଫଳରେ କଙ୍ଗୋଦ ରାଜ୍ୟର ପରିସୀମା ସଂକୁଚିତ ହୋଇଯାଇ ବାଣପୁର ଚିଲିକା ତଥା ଟାଙ୍ଗି ଅଞ୍ଚଳକୁ ନେଇ ସୀମାବଦ୍ଧ ରହିଲା । ଆଠଗଡ଼, ବୁଗୁଡ଼ା, ନୟାଗଡ଼, ରଣପୁର, ଖଲ୍ଲିକୋଟ ସବୁ ଛୋଟ ଛୋଟ ରାଜ୍ୟରେ ପରିଣତ ହୋଇ ଶାସିତ ହେଲେ । ଏଣେ କଙ୍ଗୋଦ ଓ ଶାଳିମାନଗରୀ ଅବଲୁପ୍ତ ହୋଇଗଲା । ଏହାପରେ କନ୍ଧମେଳି ହୋଇ କଙ୍ଗୋଦ ଅରାଜକତା ଭିତରେ ଗତିକଲା ।

କେତେକଙ୍କ ମତରେ ଭୌମକର ରାଜବଂଶର ଶେଷ ରାଜା ନିଃସନ୍ତାନ ଥିବାରୁ ଏବଂ ସେମାନଙ୍କ ବୈବାହିକ ସମ୍ପର୍କ ସୋମବଂଶ ( କେଶରୀ ) ରାଜାମାନଙ୍କ ସହ ଥିବାରୁ ସେହି ବଂଶର ରାଜାମାନେ କଳିଙ୍ଗ ଓ କଙ୍ଗୋଦ ଶାସନ କଲେ ।

ତେବେ ଖ୍ରୀଷ୍ଟିୟ ୧୦ମ ଶତାବ୍ଦୀଠାରୁ ୧୪୦୦ ଶତାବ୍ଦୀ ପର୍ଯ୍ୟନ୍ତ କଙ୍ଗୋଦ ରାଜ୍ୟର ଇତିହାସ ସମ୍ପୂର୍ଣ୍ଣ ଅନ୍ଧକାରଚ୍ଛନ୍ନ । ଆଗରୁ କୁହାଯାଇଛି, ଭୌମକର ବଂଶପରେ କଙ୍ଗୋଦର ମହାସାମନ୍ତମାନେ ନିଜ ନିଜ ଅଞ୍ଚଳର ସ୍ୱାଧୀନତା ଘୋଷଣା କରିସାରିବା ପରେ କଙ୍ଗୋଦର ପରିସୀମା ଅତ୍ୟନ୍ତ ସଂକୁଚିତ ହୋଇଗଲା । ତତ୍କାଳୀନ ସୂର୍ଯ୍ୟବଂଶର ରାଜାମାନେ କଳିଙ୍ଗର ଶାସକ ଥିଲେ । ଯଯାତିକେଶରୀଙ୍କ ପରେ କଳିଙ୍ଗର ରାଜଧାନୀ ଯାଜପୁରଠାରୁ କଟକକୁ ସ୍ଥାନାନ୍ତରିତ ହେବା ଇତିହାସରୁ ପ୍ରମାଣିତ ।

ଏହି ବଂଶର ରାଜାମାନଙ୍କ ପ୍ରତିନିଧି ମାନେ ତତ୍କାଳୀନ ସଂକୁଚିତ କଙ୍ଗୋଦର ଶାସନ ଦାୟିତ୍ୱ ନେଇଥିବା ଅନୁମାନ କରାଯାଏ । ସେହିପରି କଙ୍ଗୋଦରୁ ବିଛିନ୍ନ ହୋଇ ଯାଇଥିବା ଛୋଟଛୋଟ ରାଜ୍ୟର ରାଜାମାନେ ସୂର୍ଯ୍ୟବଂଶର ରାଜାମାନଙ୍କ ବଶ୍ୟତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ବାର୍ଷିକ ଖଜଣା ଦେଇ ନିଜ, ନିଜର ଶାସିତ ରାଜ୍ୟରେ ସର୍ବେସର୍ବା ହୋଇପାରିଥିଲେ ।



(ଧ୍ୱଂସପ୍ରାପ୍ତ ବଙ୍କାଡ଼ ଗଡ଼ର ଭଗ୍ନାବଶେଷ)

କଙ୍ଗୋଦର ଯେଉଁ ଅଂଶ ( ବାଣପୁର ଚିଲିକା ଟାଙ୍ଗି ଅଞ୍ଚଳକୁ ନେଇ ) ରହିଥିଲା ତାହା କଳିଙ୍ଗର ସୂର୍ଯ୍ୟବଂଶୀୟ ରାଜାମାନଙ୍କ ଦାୟିତ୍ୱରେ ରହିଥିବାର ମନେହୁଏ । କିନ୍ତୁ ସେତେବେଳର କଙ୍ଗୋଦର ରାଜଧାନୀ ଶାଳିମାନଗରୀର ଗୁରୁତ୍ୱ ବହୁଳ ଭାବରେ କମିଯାଇଥିବାର ମନେହୁଏ । ପୁନଶ୍ଚ ଏହି ଅଞ୍ଚଳ ଘୋର ବନାଞ୍ଚଳ ଓ ହିଂସ୍ର ଜନ୍ତୁ ମାନଙ୍କ ପ୍ରାଦୁର୍ଭାବ ଥିବା ଅଞ୍ଚଳ ହୋଇଥିବା ହେତୁ ସୂର୍ଯ୍ୟବଂଶର ରାଜାମାନଙ୍କ ଦ୍ୱାରା ପ୍ରେରିତ ପ୍ରତିନିଧିମାନେ ଏଠାରେ ରହିବାକୁ ପସନ୍ଦମନେ କରିଲେ ନାହିଁ । ତେଣୁ ବୋଧହୁଏ ଏହି ଅଞ୍ଚଳରେ କେତେକ ଅଖ୍ୟାତିସମ୍ପନ୍ନ ତଥା ବଳଶାଳୀ ଲୋକଙ୍କ ହାତରେ ଶାସନଭାର ସମର୍ପିତ ହୋଇଥିବାରୁ ଏ ଅଞ୍ଚଳରେ ଭୀଷଣ ଅଶାନ୍ତି ତଥା ଅରାଜକତା, ବ୍ୟାପିଥିବାର ମନେହୁଏ । ତେବେ କେଉଁମାନେ ସେତେବେଳେ ପ୍ରତିଭାଶାଳୀ

ହୋଇ ଏହି କ୍ଷୁଦ୍ର ବିଖଣ୍ଡିତ କଙ୍ଗୋଦର ଶାସନ କରୁଥିଲେ ସେ ବିଷୟରେ ଇତିହାସ ନୀରବ । ତେରଶ ମସିହା ଶେଷ ତଥା ୧୪ଶହ ମସିହା ପ୍ରାରମ୍ଭରେ ଏଠାରେ ଏକ କନ୍ଧମେଳି ହୋଇ ଅରାଜକତା ସୀମାଟପିଯାଇଥିବାର ଅନେକ ମତ ଦିଅନ୍ତି ।

କଙ୍ଗୋଦର ଦୁର୍ଦ୍ଧର୍ଷ ପାଇକମାନେ ଦଳୀୟ ପ୍ରରୋଚନାରେ ବିଭିନ୍ନ ଦଳଭୁକ୍ତ ହୋଇ ପରସ୍ପର ବିରୋଧରେ ଯୁଦ୍ଧ କରିଥିବାର ଅନେକ ମତ ଦିଅନ୍ତି । ବଳଭଦ୍ର ରଣା ନାମରେ ଖ୍ୟାତ ଜଣେ ଦୁଦ୍ଧର୍ଷ, ଅତ୍ୟାଚାରୀ ପ୍ରଶାସକ କଳିଙ୍ଗ ରାଜାଙ୍କୁ ସନ୍ତୁଷ୍ଟ କରାଇ ଏହି କ୍ଷୁଦ୍ର କଙ୍ଗୋଦର ଶାସକ ହୋଇଥିବାର କେତେକ ଐତିହାସିକ ଲେଖିଛନ୍ତି । ଏହାଙ୍କ ସମୟରେ ବହୁ ଅତ୍ୟାଚାର, ଅନାଚାର ଘଟି ଅନେକ ଲୋକ କ୍ଷୟ ହୋଇଥିଲା । ସେ ତାଙ୍କର ମୁଖ୍ୟ ଶାସନ କେନ୍ଦ୍ର ଶାଳିମ୍ନାନଗରୀଠାରୁ ଦୁରରେ ଥିବା ବନାଞ୍ଚଳରେ ଗଡିଥିବାର ଅନେକ ମତ ଦିଅନ୍ତି । ଆଜି ଯେଉଁଠାରେ ବିରଜାଇ ମୂର୍ତ୍ତି ବସି ପୂଜା ପାଉଛନ୍ତି ସେଇଟି ଥିଲା ବଳଭଦ୍ରରଣାଙ୍କର ଘର । କନ୍ଧ, ସୌରାମାନଙ୍କୁ ମେଳି କରାଇ ବେଳେ ବେଳେ ସେମାନଙ୍କ ମଧ୍ୟରେ ମନୋମାଳିନ୍ୟ ଘଟାଇ ସେ କୁଟ ଚକ୍ରାନ୍ତରେ ନିଜକୁ ରାଜାବୋଲି ପ୍ରତିପାଦନ କରାଇଥିଲେ ।

କଙ୍ଗୋଦର ବାଣିଜ୍ୟ ମଧ୍ୟ ଏହି ସମୟରେ ବହୁ ନିମ୍ନଗାମୀ ହୋଇଥିବାର କୁହାଯାଏ । ଏପରିକି ଚିଲିକାର ବହୁଅଂଶ ପୋତିହୋଇ ସ୍ଥଳଭାଗ ହୋଇଯିବାରୁ ବଡ଼ ବଡ଼ ତରୀ ଏଥିରେ ପ୍ରବେଶ ପରିପାରିନଥିଲା । ଦୀପମୁଣ୍ଡିଆରେ ସର୍ବଦା ଜଳାଯାଉଥିବା ଦୀପମଧ୍ୟ ଜଳା ଯାଇପାରିନଥିଲା । ପାଲୁର ବନ୍ଦରର ଅବକ୍ଷୟ ଏହି ସମୟ ମଧ୍ୟ ହୋଇଥିବାର ମନେହୁଏ ।

ମନ୍ଦିର ଗୁଡ଼ିକର ସୁରକ୍ଷାପାଇଁ କଙ୍ଗୋଦରାଜ୍ୟରୁ ବାହାରିଯାଇ ସ୍ୱାଧୀନ ହୋଇଥିବା ମହାସାମନ୍ତମାନେ ନିଜରାଜ୍ୟରେ ବହୁବିଧ ବ୍ୟବସ୍ଥା କରିଥିଲେ ମଧ୍ୟ ଏହି ବିଖଣ୍ଡିତ କଙ୍ଗୋଦମଣ୍ଡଳରେ ଅରାଜକତା ହେତୁ ମନ୍ଦିର ଓ ମଠଗୁଡ଼ିକୁ

ନେଇ ବହୁ ବିବାଦ ଘଟିଥିବାର ଐତିହାସିକମାନେ ମତ ଦିଅନ୍ତି ।

ଏହି ସମୟରେ ତନ୍ତ୍ରପୂଜାକୁ ଏହି ଅଞ୍ଚଳରେ ଅତ୍ୟନ୍ତ ବୀଭତ୍ସ ଓ ଭୟଙ୍କର କରାଯାଇଥିବାର ମନେହୁଏ । ବୋଧହୁଏ ଦେବୀ ଭଗବତୀଙ୍କ ପୀଠରେ ନରବଳି ବା ମେରିଆପର୍ବ କନ୍ଧ ଓ ଆଦିବାସୀମାନେ ଆରମ୍ଭ କରାଇ ଏହାକୁ ଦେବୀ ପର୍ବନାମରେ ନାମିତ କରାଇଥିଲେ ।

ଶିବପୀଠ ମାନଙ୍କ ଚତୁର୍ଦ୍ଦିଗରେ ବଣଜଙ୍ଗଲ ସୃଷ୍ଟି କରାଇ ତନ୍ନିକଟରେ ଦେବୀ ମୂର୍ତ୍ତି ସ୍ଥାପନ କରାଯାଇଥିଲା ।

ଶିବପୀଠ ମୁଖ୍ୟତଃ ବ୍ରାହ୍ମଣ ତଥା ଉଚ୍ଚବର୍ଗ ଲୋକମାନଙ୍କ ଉପାସନା ପୀଠ ହୋଇଥିବାରୁ ଏହି ମନ୍ଦିର ନିକଟରେ ଦେବୀ ମନ୍ଦିର ସବୁ ନିର୍ମାଣ କରାଇ ତନ୍ତ୍ରସାଧନା କରାଯାଉଥିଲା ଓ ଏଠାରେ ଆମିଷଭକ୍ଷଣ କରିବାରେ ବାଧା ନ ଥିଲା । ମୁଖ୍ୟତଃ ପଶୁବଳି ପ୍ରଥା ଏହି ସମୟରେ ପ୍ରବଳ ଭାବେ ଦେଖାଯାଇଥିବାର ସ୍ପଷ୍ଟ ଅନୁମେୟ ।

କଳିଙ୍ଗରେ ସୂର୍ଯ୍ୟବଂଶ ଓ ଗଙ୍ଗବଂଶର ରାଜୁତିବେଳେ ଶୈବଧର୍ମର ଉତ୍‌ଥାନ ଅତ୍ୟନ୍ତ ଉତ୍କର୍ଷ ଲାଭ କରିଥିଲା । ଅନେକ ବୌଦ୍ଧପୀଠକୁ ଏହି ସମୟରେ ଶୈବପୀଠରେ ପରିଣତ କରାଯାଇଥିବାର ଐତିହାସିକମାନେ ନିଶ୍ଚିତ । ତାହାରି ପ୍ରଭାବମଧ୍ୟ କଙ୍ଗୋଦ ଅଞ୍ଚଳରେ ପଡ଼ିଥିବାର ମନେ ହୁଏ ।

ବର୍ତ୍ତମାନର ରାମେଶ୍ୱର, ଉମାମହେଶ୍ୱର, ଦକ୍ଷେଶ୍ୱର, କଳିଯୁଗେଶ୍ୱର, ଚଣ୍ଡେଶ୍ୱର ପ୍ରଭୃତି ସ୍ଥାନରେ ଶୈବଧର୍ମର ଉତ୍‌ଥାନ ହୋଇ ଶିବ ମନ୍ଦିର ସବୁ ଗଢାଯାଇଥିଲା । କିନ୍ତୁ ବୋଧହୁଏ ସେଗୁଡ଼ିକ ଅସ୍ଥାୟୀଭାବରେ ନିର୍ମିତ ହୋଇଥିଲା ଓ ପରେ ମନ୍ଦିର ଗଢାଯାଇଥିଲା । ଏପରିକି ଶିବଲିଙ୍ଗ ଶକ୍ତି ମଧ୍ୟରେ ସ୍ଥାପନ କରାଯାଇ ଖୋଲା ଆକାଶ ତଳେ ଲୋକେ ପୂଜା କରୁଥିବାର ଅନୁମେୟ ।

ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ପରେ ଗଜପତି ପ୍ରତାପରୁଦ୍ରଦେବ ରାଜକାର୍ଯ୍ୟରେ ଅବହେଳା କରି ଅନେକ ବିପଦର ସମ୍ମୁଖିନ ହେଲେ । ଏଣୁ

ସେତେବେଳର ରାଜଗୁରୁ ଓ କୂଳପୁରୋହିତ ମାନେ ଗଜପତିଙ୍କ ରିଷ୍ଟ ଖଣ୍ଡନ ପାଇଁ ପଶ୍ଚିମାଭିମୁଖୀ ଏକ ଶୈବ ପୀଠରେ ମହାରୁଦ୍ର ଯଜ୍ଞ କରିବା ପାଇଁ ପରାମର୍ଶ ଦେଲେ । ଗଜପତିଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ସେତେବେଳେ ବାଣପୁର ପଳାଇଆସି ଡୁମୁରାପୁଟରେ ଅବସ୍ଥାନ କରୁଥିବା ଜନୈକ ରାଜଗୁରୁ ଗୋଦାବରୀଶ ମିଶ୍ର ବର୍ତ୍ତମାନର ହରିପୁରଠାରେ ଏକ ଜଙ୍ଗଲ ଘେରା ଅଞ୍ଚଳ ଭିତରେ ସ୍ୱୟମ୍ଭୁ ପଶ୍ଚିମାଭିମୁଖି ଶିବଲିଙ୍ଗ ଦର୍ଶନ କରି ଏହିଠାରେ ଅନେକ ନୈଷ୍ଠିକ ବ୍ରାହ୍ମଣମାନଙ୍କ ଦ୍ୱାରା ମହାରୁଦ୍ର ଯଜ୍ଞ ଅନୁଷ୍ଠିତ କରିଥିବାର କିମ୍ବଦନ୍ତୀ ମିଳେ । ପରବର୍ତ୍ତିକାଳରେ ଏହି ପୀଠରେ ପ୍ରତାପେଶ୍ୱର ମନ୍ଦିର ନିର୍ମିତ ହୋଇଥାଇପାରେ । କେତେକ କୁହନ୍ତି ଏହି ମନ୍ଦିର ସ୍ୱୟଂ ଗଜପତି ପ୍ରତାପରୁଦ୍ରଦେବ ନିର୍ମାଣ କରିଥିଲେ । ଓ ଆଉ କେତେକଙ୍କ ମତରେ ଏହା ବଙ୍କାଡ଼ ରାଜା ଜଗନ୍ନାଥ ମାନସିଂହ ହରିଚନ୍ଦନ ଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ସେ ଯାହାହେଉ ଆଶ୍ଚର୍ଯ୍ୟ ଭାବରେ ଇତିହାସର ପୁନରୁଦ୍ଧାର ହେଲାଭଳି ଏହି ପୀଠରେ ବିଗତ ୩/୪ ବର୍ଷ ଧରି ପୁନର୍ବାର ରୁଦ୍ର ଯଜ୍ଞ ମହାସମାରୋହରେ ପାଳିତ ହୋଇ ଆସୁଥିବା ଏକ ବିଧିର ବିଧାନ ଭଳି ମନେ ହୁଏ । ନିକଟରେ ଥିବା ରେଗେଡ଼ି ଗଡ଼ର ଗଡ଼ପତି ହୁଏତ ସେତେବେଳେ ଏହି ଅଞ୍ଚଳ ତଥା ପ୍ରତାପେଶ୍ୱର ମନ୍ଦିର ପରିଚାଳନାରେ ନିଶ୍ଚୟ ଭାଗିଦାର ଥାଇପାରନ୍ତି । ଏହା ଉପରେ ଅଧିକ ଅନୁସନ୍ଧାନ ହେବା ଉଚିତ୍ । ଆଶ୍ଚର୍ଯ୍ୟର କଥାହରିପୁର ଗ୍ରାମରେ ଜନ୍ମିତ ଏବଂ ୫ବର୍ଷ ବୟସରୁ ଗାଁ ଛାଡ଼ି ଯାଇଥିବା ବାବାଜୀ ନିତ୍ୟାନନ୍ଦ ଦାସ ବହୁବର୍ଷ ବୃନ୍ଦାବନ ଅଯୋଧ୍ୟା ଓ ଅନ୍ୟାନ୍ୟ ଧର୍ମପୀଠ ଗୁଡ଼ିକରେ ଭଗବତ୍ ଆରାଧନାରେ ନିମଗ୍ନ ହେଲାପରେ ପୁନର୍ବାର ପ୍ରତାପେଶ୍ୱରଙ୍କ ଡ଼ାକରାପାଇ ଆସି ଏହି ପୀଠରେ ଦୀର୍ଘ ୪ବର୍ଷ ଧରି ରୁଦ୍ରଯଜ୍ଞ କରିଆସୁଛନ୍ତି । ସେ ମହାଶୟଙ୍କ ଅନୁଭୂତି ଓ ଭଗବତ୍ ଆରାଧନା ଅତ୍ୟନ୍ତ ଗଭୀର ଥିବା ଭଳି ମନେ ହୁଏ ।

କଙ୍ଗୋଦ ଅଞ୍ଚଳରେ ଅନେକ ବିଷୟପତି ( ବର୍ତ୍ତମାନର ବିଷୋୟୀ ) ବଂଶଧରମାନେ ପ୍ରତିଭାଶାଳୀ ହୋଇଥିବାର ମନେହୁଏ । ସେହିମାନେ

ପ୍ରଭାବଶାଳୀ ହୋଇ ବିଭିନ୍ନ ଅଞ୍ଚଳରେ ଶାସନ କରୁଥିବାର ମନେହୁଏ । ସେତେବେଳେ କଳିଙ୍ଗର ରାଜାମାନଙ୍କ ପ୍ରତିନିଧିମାନଙ୍କ ନିର୍ଦ୍ଦେଶରେ ବୋଧହୁଏ ଏହି ବିଷୟପତି ଓ ମହାପାତ୍ରମାନେ ଶାସନ ଚଳାଉଥିବାର ଅନୁମିତ । ମହାପାତ୍ରମାନଙ୍କୁ ସେହି ଅଞ୍ଚଳର ମହାମନ୍ତ୍ରୀ ଭଳି ଲୋକେ ସମ୍ମାନ ଦେଉଥିଲେ । ଏମାନେ ବିଜ୍ଞ ଓ ପଣ୍ଡିତ ମଧ୍ୟ ଥିଲେ ।

ରାଜ୍ୟ ସୁରକ୍ଷାପାଇଁ ଭାଟ ତଥା ଚାଟମାନେ ରାଜା ବା ତତ୍କାଳୀନ ଶାସକମାନଙ୍କ ତତ୍ତ୍ୱାବଧାନରେ ଥିଲେ । ବର୍ତ୍ତମାନ ମଧ୍ୟ ପ୍ରବାଦ ଅଛି, ଚାଟ ହର ପୁଅ ଚାଟ ଓ ଭାଟ ଘର ପୁଅ ଭାଟ । ବୋଧହୁଏ ସେହିମାନଙ୍କ ଅନୁସାରେ ଏହି ପ୍ରବାଦ ଆଜି ଲୋକମୁଖରେ ପରିଚିତ । ଭାଟମାନେ ସ୍ଥାୟୀ ସୈନିକ ବା ସୁରକ୍ଷା କର୍ମଚାରୀ ଥିଲେ ଓ ଚାଟମାନେ ଦରକାର ଅନୁଯାୟୀ ଯୁଦ୍ଧ ଡ଼ାକରା ପାଇଲେ ଭାଟମାନଙ୍କ ସହ ମିଶୁଥିଲେ । ଏହି ଅନୁଯାୟୀ ଭାଟପଡ଼ା ନାମଧେୟ ଗ୍ରାମଗୁଡ଼ିକରେ ବୋଧହୁଏ ଏହି ସୈନିକମାନେ ବାସ କରୁଥିଲେ । ଭାଟ ଓ ଚାଟମାନେ ପ୍ରତ୍ୟହ ସମରାଭ୍ୟାସ ପାଇଁ ଆଖଡ଼ା ଘର ନିର୍ମାଣ କରି ସେଇଠାରେ ସମର ଅଭ୍ୟାସ କରୁଥିଲେ । ଆଜି ମଧ୍ୟ ଏହି ଅଞ୍ଚଳରେ ଏହି ପାଇକଆଖଡ଼ା ପ୍ରସିଦ୍ଧି ଲାଭ କରିଥିବାର ସମସ୍ତେ ଜାଣନ୍ତି । ଆଜିର ଚାଷଙ୍ଗରା ଗାଁ, ପ୍ରତାପ ଓ ନରେନ୍ଦ୍ରପୁର, ଦେଓଗାଁ, ଓଡ଼ଗାଁ, ରାଣୀପଡ଼ା ପ୍ରଭୃତିରେ ଚାଟମାନେ ( ଅସ୍ଥାୟୀ ସୁରକ୍ଷା ଦଳ ) ବାସ କରୁଥିବାର କେତେକ ସ୍ଥାନୀୟ ବୟସ୍କ ବ୍ୟକ୍ତିମାନେ ମତ ଦିଅନ୍ତି । ବୋଧହୁଏ ଚାଟଗାଁ ପରବର୍ତ୍ତୀ କାଳରେ ଚାଷଙ୍ଗରା ହୋଇଥାଇପାରେ ।

ଏହି ସମୟରେ ରାଜଦ୍ରୋହୀ ମାନଙ୍କୁ ଦଣ୍ଡ ଦେବାପାଇଁ ଦଣ୍ଡଗଡ଼ ଗଠିତ ହୋଇ ନିକଟରେ ଖୁଣ୍ଟମାନଙ୍କରେ ରାଜଦ୍ରୋହୀମାନଙ୍କୁ ଫାଶି ଦିଆଯାଉଥିବାର କେତେକ ମତ ଦିଅନ୍ତି । ବୋଧହୁଏ ଆଜିର ଦଣ୍ଡିଗାଡ଼ିଆ ଗ୍ରାମ ଓ ନିକଟବର୍ତ୍ତୀ ଖୁଣ୍ଟପଲ୍ଲୀ ଗ୍ରାମ ଏହାର ଉଦାହରଣ ହୋଇଥାଇପାରେ ।

ପ୍ରତାପ, ସାହାସପୁର, ବୋରିଗାଁ, ବାଁଲୋଇ, ଭେଟେଶ୍ୱର ଗାଁ ଗୁଡ଼ିକରେ ବୋଧହୁଏ ଭାଟମାନେ ବାସ କରୁଥିଲେ । ଏହିମାନେ ପ୍ରବଳ ପ୍ରତାପୀ ବଳଶାଳୀ ସୈନିକ ରୂପେ ପରିଗଣିତ ହେଲେ । ସାହାସପୁରର ଚାଟମାନେ ଅତ୍ୟନ୍ତ ସାହସୀ ଥିଲେ ଓ ଆଜିର ପ୍ରତାପ ଗାଁର ମହାପ୍ରତାପୀ ଭାଟମାନେ ବାସ କରୁଥିବାର କେତେକ ବୟସ୍କ ବ୍ୟକ୍ତିମାନଙ୍କ ମତ ଅଟେ ।

କଙ୍ଗୋଦର ତତ୍କାଳୀନ ରାଜଧାନୀ ଶାଳିମାନଗରୀ ଅତ୍ୟନ୍ତ ଉନ୍ନତ ନଗରୀ ଭାବେ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ସେତେବେଳେ ଏହା ବୋଧହୁଏ ଅସ୍ଥାୟୀ ମାଟି କାନ୍ଥଘେରା ଦୁର୍ଗ ହୋଇଥିବାର ଅନେକ ମତ ଦିଅନ୍ତି । କଳିଙ୍ଗର ସୂର୍ଯ୍ୟବଂଶ ତଥା ଗଙ୍ଗ ବଂଶ ରାଜୁତି ବେଳେ ଏହି ନଗରୀର ବୋଧହୁଏ ପତନ ହୋଇଥିବାର ଅନୁମିତ ହୁଏ । କାରଣ ଏହାର ରକ୍ଷଣାବେକ୍ଷଣ ଦାୟିତ୍ୱ କେହି ନ ନେଇଥିବାରୁ ତଥା ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟରେ ଏହି ନଗରୀ ଧ୍ୱଂସ ହୋଇଥାଇପାରେ । କେତେକ କୁହନ୍ତି ଶାଳିମା ନଗରୀ ଶାଳିଆ ନଦୀର ଭୟଙ୍କର ବନ୍ୟାଦ୍ୱାରାବାଲିଚର ହୋଇଯାଇଥିବାରୁ ଏହାର ପରବର୍ତ୍ତୀ ଶାସକମାନେ ଅନ୍ୟଏକ ସ୍ଥାନରେ ( ବୋଧହୁଏ ବଙ୍କାଡ଼ଗଡ଼ ) ରାଜଧାନୀ ପ୍ରତିଷ୍ଠା କରିଥିଲେ । ଆଜିର ଉତ୍ତରାୟଣୀ ପୀଠ ତଥା ଗୋଦାବରୀଶ ବିଦ୍ୟାପୀଠ ଅଞ୍ଚଳର ମାଟି ବାଲି ଭିତରେ ସେହି ଐତିହାସିକ ଶାଳିମାନଗରୀର ଭଗ୍ନାବଶେଷ ମିଳିପାରନ୍ତା ଯଦି ପ୍ରତ୍ନତତ୍ତ୍ୱ ବିଭାଗ ଏହାର କାର୍ଯ୍ୟ ହାତକୁ ନିଅନ୍ତେ ।

ଏହି ସମୟରେ ଯଯାତିକେଶରୀ କିମ୍ବା ଚୋଳଗଙ୍ଗଦେବଙ୍କ ଦ୍ୱାରା ଆଜିର କାରୁକାର୍ଯ୍ୟ ମଣ୍ଡିତ ଅର୍ଦ୍ଧନିର୍ମିତ ଦକ୍ଷପ୍ରଜାପତି ମନ୍ଦିର ସମ୍ପୂର୍ଣ୍ଣ କରାଯାଇଥିଲା ବୋଲି କେତେକ ଐତିହାସିକ ଅନୁମାନ କରନ୍ତି । କିନ୍ତୁ ଏହାର ସତ୍ୟତା ପ୍ରମାଣସାପେକ୍ଷ ନୁହେଁ । ଆଉ କେତେକଙ୍କ ମତରେ ଘଣ୍ଟଶିଳାର ପୂର୍ବ ଦକ୍ଷିଣ କୋଣରେ ଏକ ବିରାଟ ଗଡ଼ ଥିଲା । ଏହାର ପ୍ରମାଣ ବର୍ତ୍ତମାନ ରଘୁନାଥ ଶତପଥୀଙ୍କ ଅନୁଭୂତିରୁ ସ୍ପଷ୍ଟ । ଆଗରୁ ବର୍ଣ୍ଣିତ କୋଟପୁରର ଅମୁହାଁମନ୍ଦିର



(ନିକଟ ଅତୀତରେ ପ୍ରତିଷ୍ଠିତ ହନୁମାନ ମନ୍ଦିରର ଠିକ୍ ଦକ୍ଷିଣକୁ ମିଳିଥିବା ଗଡ଼ଖାଇ)

ପାଇଁ ଏହି ଗଡ଼ଖାଇ ପ୍ରାଚୀରରୁ ବୃହଦାକାର ଇଟା ସଂଗ୍ରହ କରି ମନ୍ଦିରଟି ସମ୍ପୂର୍ଣ୍ଣ କରାଯାଇଛି । ଏହି ଗଡ଼ଟିର ଚତୁଃପାର୍ଶ୍ୱରେ ଏକ ଗଡ଼ଖାଇ ଥିଲା ଓ ଏହା ଏକ ପ୍ରସିଦ୍ଧ ବୌଦ୍ଧପୀଠ ରୂପେ ସେତେବେଳେ ପରିଚିତ ହୋଇଥିଲା ବୋଲି ତାଙ୍କର ମତ । ଏହି ଗଡ଼ର ମୁଖ୍ୟ ଦେବତା ଘଣ୍ଟନିଧି ରୂପେ ପୂଜା ପାଇଥିଲେ । ନିମ୍ନଭାଗରେ ସୋମନାଥେଶ୍ୱରଙ୍କ ମନ୍ଦିର ଥିଲା । ଘଣ୍ଟନିଧିଙ୍କୁ ପୂଜା କଲେ ବର୍ଷାହୁଏ ବୋଲି ଏବେ ମଧ୍ୟ ପ୍ରବାଦ ଅଛି । ଶାଳିଆ କେନାଲ ଖୋଳାହେବା ବେଳେ ଏହି ଘଣ୍ଟନିଧିଙ୍କୁ ସ୍ଥାନାନ୍ତରିତ କରାଯାଇଅଛି । ଏହି ଗଡ଼ ବା ବୌଦ୍ଧ ପୀଠ ଶାଳିମା ନଗରୀର ଏକ ଅଂଶ ଥିବାର ମନେହୁଏ ଓ ଏହିଠାରେ ତତ୍କାଳୀନ ବହୁ ବୌଦ୍ଧ ଶ୍ରମଣ ରହୁଥିବାର କିମ୍ବଦନ୍ତୀ କୁହେ ।

# ଦେବୀ ଭଗବତୀ, କାଳଜୟୀ, ଓ ତନ୍ତ୍ରପୂଜା

କଙ୍ଗୋଦ ଅଞ୍ଚଳରେ ଏହି ସମୟରେ ତନ୍ତ୍ର ଶାସ୍ତ୍ର ତଥା ତାନ୍ତ୍ରିକ ବିଦ୍ୟାର ବହୁ ବୀଭତ୍ସତା ସାଧିତ ହୋଇଥିବାର ଅନେକ ମତ ଦିଅନ୍ତି । ଅନେକ ଅଦ୍ଭୁତ ତଥା ଅଲୌକିକ ଘଟଣା ଦେବୀକୃପାରେ ଘଟିଥିବାର କିମ୍ବଦନ୍ତୀ ଏଅଞ୍ଚଳରେ ଏବେ ମଧ୍ୟ କିମ୍ବଦନ୍ତୀ ପ୍ରସୂତ । ବୋଧହୁଏ କଙ୍ଗୋଦ ଇତିହାସର ଏହି ଅନ୍ଧକାରାଚ୍ଛନ୍ନ ସମୟରେ ବିଭିନ୍ନ ବଳଶାଳୀ ଲୋକମାନେ ନିଜ, ନିଜ ମଧ୍ୟରେ କଳିଗୋଳ କରାଇ ବିଭିନ୍ନ ଦେବଦେବୀ ନାମରେ ନିଜ, ନିଜର ପରାକାଷ୍ଠା ଦେଖାଇଥିବା କୁହାଯାଏ ।

ସେହିଭଳି ଏକ ପ୍ରବାଦ ଅନୁଯାୟୀ ତତ୍କାଳୀନ ଚିଲିକାର ଗଭୀର ଗଣ୍ଡଦେଶରେ ଥିବା ପାହାଡ଼ ନିକଟରେ ଏକଦାରୁଣ ପ୍ରାକୃତିକ ଦୁର୍ବିପାକ ଘଟି ଅନେକ କୈବର୍ତ୍ତଙ୍କର ମୃତ୍ୟୁ ଘଟିଥିଲା । ଏହି ସମୟରେ ସେମାନଙ୍କୁ କେଉଁଠି ଶୂନ୍ୟବାଣୀ ହେଲା ଯେ ଯେଉଁମାନେ ବଞ୍ଚିଗଲେ ସେମାନଙ୍କୁ ସେଠାରେ ଦେବୀ



(ଚିଲିକା ମଧ୍ୟସ୍ଥ ବିଜେ ଦେବୀ କାଳୀଜାଈ)

କାଳୀ ରକ୍ଷା କଲେ । ଏହି କାଳୀ ଦେବୀ କୁଆଡ଼େ ଭଗବତୀଙ୍କ କନିଷ୍ଠ ଭଗିନୀ ଅଟନ୍ତି ବୋଲି କୁହାଗଲା । ପରବର୍ତ୍ତୀକାଳରେ ଅନେକ ତାନ୍ତ୍ରିକ ବ୍ରାହ୍ମଣ ମିଳିତ

ଭାବରେ ଏକବର୍ଷ ଏଠାରେ ପୂଜା ଓ ହୋମକରି ଷଷ୍ଠୀଓଷା ତିଥିରେ ଭଗବତୀଙ୍କ ଚଳନ୍ତି ପ୍ରତିମାକୁ ଏଠାକୁ ଅଣାଇ ଏହି ପାହାଡ଼ ଉପରେ ଏକ ଦେବୀ ମୂର୍ତ୍ତି ପ୍ରତିଷ୍ଠା କଲେ ଓ ତାଙ୍କର ନାମ ଦେଲେ କାଳୀଜାୟୀ । ଏବେ ମଧ୍ୟ ଷଷ୍ଠୀଓଷା ବାସିଦିନ ବାଲୁଗାଁ ଗ୍ରାମରେ ଭଗବତୀ ବିଜେ କରନ୍ତି ଓ କାଳୀଜାୟୀଙ୍କ ଆଜ୍ଞାମାଳ ଏହିଦିନ ଗ୍ରହଣ କରି ପୁଣି ଫେରିଯାଆନ୍ତି । ବୋଧହୁଏ ଏହି କିମ୍ବଦନ୍ତୀ ଅନୁଯାୟୀ କାଳଜୟୀ ଦେବୀ ଚିଲିକାର ଏହି ପାହାଡ଼ ଉପରେ ଏକାଦଶ, କିମ୍ବା ଦ୍ୱାଦଶ ଶତାବ୍ଦୀରେ ତାନ୍ତ୍ରିକ ମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବାର ଅନୁମିତ ହୁଏ ।

ଅନେକ କୁହନ୍ତି, କେତେକ ତାନ୍ତ୍ରିକ ବ୍ରାହ୍ମଣ ତଥା ପୂଜକ ଏହି ପାହାଡ଼ରେ ବହୁବର୍ଷ ରହି ତନ୍ତ୍ର ସାଧନ କରିଥିଲେ । ସେହି ପଥରେ ପରିକ୍ରମା କଲାବେଳେ ପ୍ରତ୍ୟେକ କୈବର୍ତ୍ତ ଡ଼ଙ୍ଗାରୁ କିଛି ସଦ୍ୟମାଛ ଏହି ତାନ୍ତ୍ରିକମାନଙ୍କ ଦେବୀ ପୂଜା ପାଇଁ ପ୍ରତ୍ୟହ ଦେଉଥିବାର ଅଭ୍ୟସ୍ତ ଥିଲେ । ଦେବୀଙ୍କ ପାଇଁ ଡ଼ଙ୍ଗାରୁ କିଛି ମାଛ ଦାନ କଲେ ଚିଲିକାଭିତରେ ଦେବୀଙ୍କ କୃପାରୁ କୈବର୍ତ୍ତମାନେ ବିନା ବିପଦରେ କାର୍ଯ୍ୟନିର୍ବାହ କରିପାରୁଥିଲେ । ଏବେ ମଧ୍ୟ ସେହି ପ୍ରଥା ବଳବତ୍ତର ରହିଅଛି । ଏଣୁ କିଛି ବର୍ଷପୂର୍ବେ ଯେଉଁମାନେ ଦେବୀପୀଠରେ ଭୋଗ କରିବାକୁ ଯାଆନ୍ତି ସେମାନେ ବିନା ପଇସାରେ ବହୁମାଛ ପାଇ ଭୋଗ କରିଥିବାର ଏବେ ମଧ୍ୟ ଲୋକମାନେ କୁହନ୍ତି । ପରବର୍ତ୍ତୀକାଳରେ ଏହି ତାନ୍ତ୍ରିକ ମାନେ ଏହି ପୀଠରେ ପଶୁପକ୍ଷୀ ଜୀବନ୍ତ ଦାନ କଲେ ଦେବୀ କୃପା ପ୍ରବଳଭାବରେ ମିଳିବ ବୋଲି ପ୍ରଚାର କରିଥିବାରୁ ଭକ୍ତମାନେ ଏହି ପାହାଡ଼ରେ ନିଜ, ନିଜର ଯାଚଞ୍ଚା ଅନୁଯାୟୀ ବହୁ କୁକୁଡ଼ା ଓ ଛେଳି ଛାଡ଼ି ଆସୁଛନ୍ତି । ଏହି ସମୟରେ କିଛିକାଳ ପାଇଁ ଏହି ଦେବୀ ପୀଠରେ ନରବଳି ଦିଆଯାଇଥିବାର ମଧ୍ୟ ପ୍ରବାଦ ରହିଅଛି । ଏଣୁ ଅମାବାସ୍ୟା ସଂକ୍ରାନ୍ତିରେ ଏହି ପୀଠକୁ କେହି ଯାଉ ନଥିବାର କୁହାଯାଏ ।

# ଦେବୀ ଭଗବତୀ

ବାଣପୁର ଭଗବତୀ ଦେବୀପୀଠରେ ଏହି ତାନ୍ତ୍ରିକ ଯୁଗରେ କନ୍ଧମାନଙ୍କ ପ୍ରତିପତ୍ତି ବହୁଳଭାବରେ ଥିବାର କୁହାଯାଏ । କନ୍ଧମାନଙ୍କ ଦଳପତି ବିଗାଲଙ୍କ ଅଧୀନରେ ଦେବୀ ଭଗବତୀଙ୍କ ସେବା ପୂଜା ତାନ୍ତ୍ରିକ ବ୍ରାହ୍ମଣମାନଙ୍କ ମାଧ୍ୟମରେ କରାଯାଉଥିଲା । ସେତେବେଳେ ଦେବୀ ଏକ ନିବିଡ଼ ଜଙ୍ଗଲ ଭିତରେ ଏକ ଗଛମୂଳେ ପୂଜା ପାଉଥିଲେ । ଦଶହରା ଦେବୀ ପର୍ବବେଳେ ଏହିଠାରେ ପଶୁବଳି ସହ ନରବଳି ମଧ୍ୟ ଦିଆଯାଉଥିଲା । ଏହା କନ୍ଧମାନଙ୍କ ମେରିଆ ପୂର୍ବ ଭଳି ପାଳିତ ହେଉଥିଲା । ରାଜାମାନଙ୍କ କର୍ତ୍ତୃତ୍ୱ ଥିଲାବେଳେ ମଧ୍ୟ ଏହି ମେରିଆ ପ୍ରଥା ଉପରେ ରାଜାମାନଙ୍କର ଅଧିକାର ନଥିଲା । ବୋଧହୁଏ ବର୍ତ୍ତମାନ ବଳିକେନା ଏହି ନରବଳି ପ୍ରଥାର ଏକ ପ୍ରତୀକ ଅଟେ ।

ପ୍ରବାଦ କୁହେ, ୧୧୦୦ ଶତାବ୍ଦୀରୁ ୧୪୦୦ଶତାବ୍ଦୀ ଭିତରେ ଯେତେବେଳେ କଙ୍ଗୋଦ ଖଣ୍ଡବିଖଣ୍ଡିତ ହୋଇଗଲା ଓ ରାଜ୍ୟରେ ଅରାଜକତା ଦେଖାଦେଲା ସେତେବେଳେ କନ୍ଧମେଳି ହୋଇ କନ୍ଧ ଦଳପତି ବିଗାଲଦ୍ୱାରା କେତେକ ଅଞ୍ଚଳ,ଖାସ୍ ଶାସିତ ହେଲା । ସେତେବେଳେ ଆଜିର ବିରଜାଇ ମନ୍ଦିରଠାରେ ସ୍ତମ୍ଭାକାର ଦେବୀ ପ୍ରତିମା ସ୍ତମ୍ଭେଶ୍ୱରୀ ରୂପେ ପୂଜା ପାଉଥିଲେ । କନ୍ଧ ପ୍ରଥା ଅନୁଯାୟୀ ଏହି ଦେବୀ ପୀଠରେ ବଳି ପ୍ରଥା ପ୍ରବଳ ଭାବରେ ଖ୍ୟାତି ଲାଭ କରିଥିଲା । ୧୫୦୦ ଶତାବ୍ଦୀରେ ଯଦୁରାଜ ମାନସିଂହ ବଙ୍କାଡ଼ଗଡ଼ଠାରେ ରାଜଧାନୀ ପ୍ରତିଷ୍ଠା କରିବାର ବହୁ ପୂର୍ବରୁ ଅରାଜକତା ଓ କଳିକନ୍ଦଳ ଭିତରେ ଏହି ସ୍ତମ୍ଭେଶ୍ୱରୀ ମୂର୍ତ୍ତିଙ୍କୁ ସେଠାରୁ ସ୍ଥାନାନ୍ତରିତ କରାଯାଇ ବାଣପୁର ଭଗବତୀଙ୍କ ସମୀପରେ ରଖାଯାଇ ପୂଜାର୍ଚ୍ଚନା କରାଯାଇଥିଲା । ଆଉ କେତେକ କୁହନ୍ତି, ବିଗାଲର ଶତ୍ରୁମାନେ ଏହି ସ୍ତମ୍ଭେଶ୍ୱରୀ ପ୍ରତିମାଙ୍କୁ ଶାଳିଆ ନଦୀରେ ଭସାଇ ଦେବାରେ ବାଣପୁର ସନ୍ନିକଟ ଏକ ଗ୍ରାମ ନିକଟରେ ଜଣେ ରଜକ ଏହାଙ୍କୁ

କାଠ ବୋଲି ଭାବି କୁରାଡି ଚୋଟ ମାରିବାରେ ସେଥିରୁ ରକ୍ତସ୍ରାବ ହେଲା । ଏହା ପ୍ରଚାରିତ ହେବା ଓ ବହୁ ସଂଖ୍ୟାରେ ଭକ୍ତମାନେ ଆସି ଏହାଙ୍କୁ ନେଇ ଭଗବତୀଙ୍କ ଚଳନ୍ତି ପ୍ରତିମା କରିଥିବାର କୁହାଯାଏ । ତେବେ ଏହି ସ୍ତମ୍ଭେଶ୍ୱରୀ ଭଗବତୀଙ୍କ ସହ ସାମିଲ ହେବାପରେ ଏହି ପୀଠରେ ବଳି ପ୍ରଥା ବହୁଳ ଭାବରେ ପ୍ରସାର ଲାଭ କରିଥିବାର ସତ୍ୟ ମନେ ହୁଏ ।



(ଦେବୀ ଭଗବତୀ ମନ୍ଦିର)

ପରବର୍ତ୍ତୀ କାଳରେ ସ୍ତମ୍ଭେଶ୍ୱରୀ ସ୍ଥାନାନ୍ତରିତ ହୋଇଥିବା ସ୍ଥାନରେ ବିରଜାଇ ମୂର୍ତ୍ତିଙ୍କୁ ରାଜା ଯଦୁରାଜ ମାନସିଂହ ସ୍ଥାପନ କରିଥିବାର ପ୍ରମାଣିତ ଅଟେ । ବଙ୍କାଡ଼ ଗଡ଼ରେ ରାଜଧାନୀ ପ୍ରତିଷ୍ଠା କରିବା ପରେ ରାଜା ଯଦୁରାଜମାନସିଂହ ଦେବୀ ଭଗବତୀଙ୍କ ପାଇଁ ୨ବାଟି ଜମି ଖଞ୍ଜି ଦେଇଥିବାର ଇତିହାସ କୁହେ । ବର୍ତ୍ତମାନ ଭଗବତୀଙ୍କ ସମ୍ମୁଖରେ ପୂଜିତ ହେଉଥିବା କାଠି ପ୍ରତିମା ବିରଜାଇଙ୍କ ପ୍ରତୀକ ବୋଲି କୁହାଯାଏ । ବୋଧହୁଏ ଏହି କାଠି ପ୍ରତିମାଙ୍କୁ ପରବର୍ତ୍ତୀକାଳରେ ସ୍ଥାପନ କରାଯାଇଥିବା ମନେହୁଏ । କାରଣ ବଙ୍କାଡ଼ ଗଡ଼ରେ ବିରଜାଇ ପ୍ରତିଷ୍ଠିତ ହେଲାପରେ ପରବର୍ତ୍ତୀ କୌଣସି ରାଜାଙ୍କ ନିର୍ଦ୍ଦେଶରେ ବିରଜାଇଙ୍କ ସମ୍ମାନରେ ଏହି ପ୍ରତିମା ପ୍ରତିଷ୍ଠା କରାଯାଇଥାଇପାରେ । ଦୁଇଟି

ସ୍ତମ୍ଭାକାର ପ୍ରତିମା ଭଗବତୀଙ୍କ ପୀଠରେ ପୂଜିତ ହୋଇଥିବାରୁ କିଏ ବିରଜାଇ ଓ କିଏ ଭଗବତୀ ଏ ସମ୍ବନ୍ଧରେ ଅନେକ ବିଭ୍ରାନ୍ତିକର ବିବୃତ୍ତି ମିଳିଥାଏ । ତେବେ ଭଗବତୀଙ୍କ ଚଳନ୍ତିପ୍ରତିମା କାଠି ଠାକୁରାଣୀ ଏକ ଯନ୍ତ୍ର ( ତନ୍ତ୍ର ବିଦ୍ୟାରେ ନିର୍ମିତ) ଉପରେ ପ୍ରତିଷ୍ଠା ଲାଭ କରିଥିବାର ଏବେ ମଧ୍ୟ ପ୍ରମାଣିତ । ଏ ସମ୍ବନ୍ଧରେ ଯେତେ ସବୁ କିମ୍ବଦନ୍ତୀ ଅଛି ତାହାକୁ ଅନୁଧ୍ୟାନ କଲେ ଆମ୍ଭେମାନେ ସତ୍ୟଠାରୁ ବହୁଦୂରରେ ରହିବା ନିଶ୍ଚିତ ।

ସେହିଭଳି କେତେକ ବୃଦ୍ଧ ବ୍ରାହ୍ମଣ ଓ ପଣ୍ଡିତମାନେ କୁହନ୍ତି ଯେ ପ୍ରକୃତରେ ଭଗବତୀଙ୍କ ପାଖରେ ବଳିଭୋଗ ହୁଏ ନାହିଁ । ଭଗବତୀଙ୍କ ଆଗରେ ପଲକାଶୁଣୀ ନାମିତ ଏକ ଉଗ୍ର ଦେବୀମୂର୍ତ୍ତିଙ୍କ ଆଗରେ ଏହି ବଳି ଦିଆଯାଏ । କାରଣ ଏହି ଦେବୀ ହେଉଛନ୍ତି ଆଦିବାସୀ ସଭ୍ୟତାର ପ୍ରତୀକ ଓ ବଳିଭୋଗ ଏହି ଦେବୀଙ୍କର ଅତିପ୍ରିୟ ଅଟେ । ଏବେ ମଧ୍ୟ ଆଶ୍ୱିନମାସରେ ଦଶହରା ପୂଜା ସମୟରେ ଏହି ପଲକାଶୁଣୀ ଙ୍କ ସମ୍ମୁଖରେ ବଳି ପଡ଼ୁଚଥିବାର ସମସ୍ତେ ଜାଣନ୍ତି । ମେରିଆ ପର୍ବର ଅନୁକରଣରେ ଏହି ପୀଠରେ ନରବଳି ଦିଆଯାଉଥିବାର କିମ୍ବଦନ୍ତୀ ମିଳେ । ବୋଧହୁଏ ଆଜିର ବଳିଜେନା ( ଦଶହରା ଯାତ୍ରାର ) ତାହାର ପ୍ରତୀକ ମାତ୍ର । ମହାପଶୁବଳି ଏବେ ମଧ୍ୟ ପାରିକୁଦ ରାଜଦରବାରରୁ ଆସୁଥିବାର ଅନେକ କୁହନ୍ତି ।

# ବଙ୍କାଡ଼ରେ ନୂତନ ରାଜବଂଶ

ଦୀର୍ଘ ୯୫୦ ମସିହାରୁ ୧୫୫୦ ପର୍ଯ୍ୟନ୍ତ ୬୦୦ବର୍ଷ ଧରି ଖଣ୍ଡ ବିଖଣ୍ଡିତ କ୍ଷୁଦ୍ର କଙ୍ଗୋଦରେ ( ଆଜିର ବାଣପୁର ଇଲାକା ) ଅରାଜକତା ତଥା କୁଶାସନ ବ୍ୟାପି ରହିବା ପରେ ୧୫ଶ ଶତାବ୍ଦୀର ମଧ୍ୟଭାଗରେ ଏହି କ୍ଷୁଦ୍ର ରାଜ୍ୟ ପୁନର୍ବାର ରାଜଶାସନ ଭିତରକୁ ଫେରିଥିଲା ।

କେଶରୀ ବଂଶ ପରେ ପରେ କଳିଙ୍ଗର ତଦାନୀନ୍ତନ ରାଜଧାନୀ ଯାଜପୁରଠାରୁ କଟକ ବାରବାଟୀକୁ ସ୍ଥାନାନ୍ତରିତ ହୋଇଥିଲା । ସେତେବେଳେ ଆଫଗାନ୍‌ମାନଙ୍କ ପ୍ରାଦୁର୍ଭାବ ଯୋଗୁଁ କଳିଙ୍ଗର ସ୍ଥିତି ଦୋହଲି ଯାଇଥିବାର ଇତିହାସରୁ ପ୍ରମାଣିତ । ଏହିଭଳି ଏକ ସମୟରେ କଳିଙ୍ଗ ରାଜା ଗଜପତିଙ୍କ ଅଧୀନରେ ବହୁ ସ୍ୱାଧୀନ ଗଡ଼ଜାତର ରାଜାମାନେ ରାଜୁତି କରୁଥିଲେ ଓ କଳିଙ୍ଗ ରାଜାଙ୍କ ବାର୍ଷିକ ଅନୁଦାନ ଦେଉଥିଲେ । ଅନ୍ୟ ଅଞ୍ଚଳଗୁଡ଼ିକ ରାଜାଙ୍କ ଖାସ୍ ଶାସନ ଭିତରେ ରହି ଅନେକ ଦଣ୍ଡପାଟ ରୂପେ ବିଭକ୍ତ ହୋଇଥିଲା । ସେହି ଦଣ୍ଡପାଟ ଗୁଡ଼ିକରେ ସ୍ୱାଧୀନ ଶାସକମାନେ ରହିଥିଲେ ମଧ୍ୟ କଳିଙ୍ଗ ରାଜାଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଥିଲେ ।

ଯଦୁରାଜ ମାନସିଂହ

ବୋଧହୁଏ ସେହି ଯାଜପୁର ନିକଟସ୍ଥ କୌଣସି ଏକ ଦଣ୍ଡପାଟର ରାଜା ରୂପେ ରାଜା ସୁଦର୍ଶନ ନାମରେ ଜଣେ ସୁଶାସକ ରାଜୁତି କରୁଥିଲେ । କିମ୍ବଦନ୍ତୀ କୁହେ, ଥରେ ଜଣେ ଦିଗାଲ୍ ବା ଦଳପତି ରାଜା ସୁଦର୍ଶନଙ୍କୁ ବଶୀଭୂତ କରିବା ପାଇଁ ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ । ଏଣୁ ପରବର୍ତ୍ତୀକାଳରେ ସେ ଦଳବଳ ଧରି ରାଜା ସୁଦର୍ଶନଙ୍କ ସହ ଯୁଦ୍ଧ କରି ତାଙ୍କୁ ପରାହତ କରିଥିଲେ । ଏହି ଯୁଦ୍ଧରେ ରାଜା ସୁଦର୍ଶନ ନିହତ ହେବାପରେ ତାଙ୍କର ବାଳୁତ ପୁତ୍ର ( ମାତ୍ର ୭ବର୍ଷର ପୁତ୍ର ) ସ୍ଥାନୀୟ ଜଣେ ମାଳୀଘରକୁ ସ୍ଥାନାନ୍ତରିତ ହୋଇ ପାଳିତ

ହେଲେ । ଯୁଦ୍ଧପରେ ଉପୋରକ୍ତ ଦିଗାଲ୍ ଯେତେବେଳେ ରାଣୀ ଓ ବାଳୁତ ପୁତ୍ର ସ୍ଥାନାନ୍ତରିତ ହୋଇଥିବାର ଜାଣିଲେ ସେତେବେଳେ ସେ କ୍ରୋଧାନ୍ୱିତ ହୋଇ ରାଜ୍ୟର ପ୍ରତିଷ୍ଠିତ ଦେବୀ ବିରଜାଇ ଓ ଭୁବନେଶ୍ୱରୀ ଦୁଇ ମୂର୍ତ୍ତିଙ୍କୁ ରାଜ ଉଆସର ପୁଷ୍କରିଣୀରେ ନିକ୍ଷେପ କରି ମାଳି ଓ ବାଳୁତ ରାଜପୁତ୍ରଙ୍କୁ ବନ୍ଦିକରି ରଖିଲେ । କିଛିଦିନପରେ ଥରେ ସେହି ବନ୍ଦୀଗୃହରେ ଦେବୀ ବିରଜାଇ ସ୍ୱପ୍ନରେ ରାଜପୁତ୍ରଙ୍କୁ ଦର୍ଶନଦେଇ କହିଲେ, "ହେ କୁମାର, ତୁମ୍ଭର ଦୁର୍ଦ୍ଦିନ ସରିଆସିଛି । ତୁମ୍ଭେ ତୁମ୍ଭର ପାଳିତ ପିତା ମାଳୀ ସହ ଆଜି ରାତିରେ ଏହି ପୁଷ୍କରିଣୀ ମଧ୍ୟରୁ ମୋର ପ୍ରତିମା ଓ ଭୁବନେଶ୍ୱରୀ ପ୍ରତିମାଙ୍କୁ ଉଦ୍ଧାର କରି ଏରାଜ୍ୟ ତ୍ୟାଗ କର । ତୁମ୍ଭେମାନେ ଏହି ପ୍ରତିମାଙ୍କୁ ନେଇ ଗଲାବେଳେ ସମ୍ମୋହିତ ହୋଇ କିଛି ଜାଣି ପାରିବ ନାହିଁ ଏବଂ ଯେଉଁଠାରେ ଯେତେବେଳେ ତୁମ୍ଭର ଚୈତନ୍ୟ ଫେରିବ, ତୁମ୍ଭେ ଅତୀତ କଥା ସ୍ମରଣ କରିପାରିବ । ସେହିଠାରେ ତୁମ୍ଭର ରାଜ୍ୟାଭିଷେକ ହେବ ଓ ତୁମ୍ଭେ ଆମ୍ଭଙ୍କୁ ଭୁଲି ନଯାଇ ତୁମ୍ଭର ରାଜ୍ୟରେ ଆମ୍ଭଙ୍କୁ ପ୍ରତିଷ୍ଠିତ କରାଇ ପୂଜାର୍ଚ୍ଚନା କରିଲେ ତୁମ୍ଭର ଉତ୍ତରୋତ୍ତର ଉନ୍ନତି ହେବ ।"

ଏହି ସ୍ୱପ୍ନାଦେଶ ପାଇ ଯୁବକ ଯଦୁରାଜ ଓ ମାଳୀ ସମ୍ମୋହନ ମନ୍ତ୍ରରେ ସମ୍ମୋହିତ ହୋଇ ଦେବୀ ପ୍ରତିମା ଦୁଇଙ୍କୁ ଧରି ପଥ ପରେ ପଥ ଅତିକ୍ରମ କରି ଶେଷରେ ଆଜିର ମାଳ ନୀଳାଦ୍ରିପ୍ରସାଦ ନିକଟରେ ଚୈତନ୍ୟ ପ୍ରାପ୍ତହେଲେ । ସେତେବେଳେ ସେହି ରାଜ୍ୟର କନ୍ଧମାନଙ୍କ ଦିଗାଲ୍ ର ମୃତ୍ୟୁ ହୋଇଯାଇଥିବାରୁ କନ୍ଧମାନେ ସେମାନଙ୍କ ଦଳପତି ନିର୍ବାଚନ କରିବା ପାଇଁ ଅନୁସନ୍ଧାନରତ ଥିଲେ । ଏହି ସୁଦର୍ଶନ ଯୁବକଙ୍କୁ ପାଇ ସେମାନେ ନିର୍ବିବାଦରେ ଏହାଙ୍କୁ ସେମାନଙ୍କ ଦଳପତି ତଥା ରାଜା ରୂପେ ବରଣ କଲେ । ଏହି ସୁଦର୍ଶନ ଯୁବକ ହେଉଛନ୍ତି ବଙ୍କାଡ଼ ଗଡ଼ର ପ୍ରଥମ ରାଜା ଯଦୁରାଜ ମାନସିଂହ । ସେ ୧୫୬୬ ରୁ ୧୬୧୪ ପର୍ଯ୍ୟନ୍ତ ବଙ୍କାଡ଼ର ରାଜା ଥିଲେ । ଯଦୁରାଜ ବଙ୍କାଡ଼ର ରାଜାହେବା ପରେ

ରାଜ୍ୟ ପରିକ୍ରମାରେ ବାହାରିଲେ । ପ୍ରଥମେ ସେତେବେଳର ଆତ୍ମଘୋଷିତ ରାଜା ବଳଭଦ୍ର ରଣାଙ୍କ ସହ ଯୁଦ୍ଧ ଘୋଷଣା କରି ବଳଭଦ୍ର ରଣାଙ୍କୁ ପରାହତ କଲେ । ବଳଭଦ୍ର ରଣାର କଦର୍ଯ୍ୟ ବ୍ୟବହାର ଓ କୁଟଚକ୍ରାନ୍ତରେ ସେତେବେଳେ ବାଣପୁର ଅଞ୍ଚଳରେ ଅରାଜକତା ବ୍ୟାପିଥିଲା । ଏଣୁ କନ୍ଧମାନେ ତାଙ୍କୁ ରାଜାବୋଲି ମାନୁନଥିଲେ । ଏହି ଯୁଦ୍ଧରେ ପରାସ୍ତ ହୋଇ ମୃତ୍ୟୁବରଣ କରିବା ପୂର୍ବରୁ ବଳଭଦ୍ର ରଣା ରାଜା ଯଦୁନାଥଙ୍କୁ ଯୋଡ଼ହସ୍ତରେ ତାହାର ଇଷ୍ଟଦେବ ଶଙ୍ଖକୁ ସବୁଦିନ ପାଇଁ ସମ୍ମାନ ଦେବାକୁ ଅନୁରୋଧ କରିଥିବାରୁ ଏବେ ମଧ୍ୟ ପାରିକୁଦ ରାଜବଂଶର ଶଂଖ ଏକ ରାଜକୀୟ ଚିହ୍ନ ଅଟେ ।

ବଳଭଦ୍ର ରଣା ରହୁଥିବା ଘରେ ରାଜା ଯଦୁରାଜ ମାନସିଂହ ସାଥିରେ ଆଣିଥିବା ଦେବୀ ପ୍ରତିମା ବିରଜାଇଙ୍କୁ ପ୍ରତିଷ୍ଠା କରିଥିଲେ । ଆଜିର ବିରଜାଇ ମନ୍ଦିର ସେହି ବଳଭଦ୍ର ରଣା ଘର ବୋଲି ଅନେକ ମତ ଦିଅନ୍ତି ।



(ମାଳ ଅଞ୍ଚଳରେ ପ୍ରତିଷ୍ଠିତ ଦେବୀ ବୀରଜାଇ)

ଏହାପରେ ପରେ ଯଦୁନାଥ ମାନସିଂହ ନୀଳାଦ୍ରିପ୍ରସାଦଠାରେ ତାଙ୍କର ରାଜଧାନୀ ନିର୍ମାଣ କଲେ । ବଙ୍କାଡ଼ଗଡ଼ରେ ଥିବା ଜୀର୍ଣ୍ଣ ମନ୍ଦିର ଓ ଗଡ଼ର ଭଗ୍ନାବଶେଷ ଆଜି ତାହାର ମୂକସାକ୍ଷୀ । ଏହି ଗଡ଼କୁ ସୁରକ୍ଷିତ ରଖିବା ପାଇଁ ଚତୁର୍ଦ୍ଦିଗରେ ରାସ୍ତାର ସୁବିଧା ଥିଲା । ଉତ୍ତରରେ ରଣପୁର ରାଜ୍ୟସହ ମଝିଆଖଣ୍ଡ ଦେଇ ରାସ୍ତା, ବାଣପୁରକୁ ସିରେଇପୁର ଦେଇ ରାସ୍ତା ଓ ଗମ୍ଭାରୀମୁଣ୍ଡାକୁ ଧୂଆଁନଳୀ ଦେଇ ରାସ୍ତା ଥିବାରୁ ଶାସନ କାର୍ଯ୍ୟ ସୁଚାରେ ରୂପେ ସଂପାଦନ କରୁଥିଲେ । ଖୁବ୍‌କମ୍ ସମୟ୍ ମଧ୍ୟରେ ଉଜୁଡ଼ି ଯାଇଥିବା ରାଜ୍ୟକୁ କାର୍ଯ୍ୟକ୍ଷମ କରିବାକୁ ସମସ୍ତ ଉଦ୍ୟମ କରିଥିଲେ । ଭାଟ, ଚାଟ ପାଇକ ସମସ୍ତଙ୍କୁ ଏକତ୍ର କରାଇ କଙ୍ଗୋଦର ପୂର୍ବ ଗୌରବ ଫେରାଇ ଆଣିବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ । ତାଙ୍କର ଦୟା, କରୁଣା ଓ ଅମାୟିକ ବ୍ୟବହାରରେ କିଛି ଦିନ ଭିତରେ କଙ୍ଗୋଦର ହୃତ ଗୌରବ ଫେରି ଆସିଥିଲା ।

ସେତେବେଳେ ମୋଗଲ ମନ୍ତ୍ରୀ ତୋଡ଼ରମଲ୍ଲ ଓ ମାନସିଂହଙ୍କ ପ୍ରଚେଷ୍ଟାରୁ କଳିଙ୍ଗ ପଠାଣ ଅତ୍ୟାଚାରରୁ ମୁକୁଳିଥିଲା । ପଠାଣମାନଙ୍କ କବଳରୁ ଗଡ଼ଜାତ ତଥା କଳିଙ୍ଗର ଅନେକ ରାଜ୍ୟ ମୁକ୍ତ କରାଇ ତତ୍କାଳୀନ ମୋଗଲ ସରକାର ଭୋଇବଂଶର ପ୍ରଥମ ରାଜା ରାମଚନ୍ଦ୍ରଦେବଙ୍କ ହସ୍ତରେ ଶାସନ ଭାର ଅର୍ପଣ କରାଇଥିଲେ । ଯଦୁରାଜ ବଙ୍କାଡ଼ରେ ରାଜୁତି କରୁଥିବାବେଳେ କଳିଙ୍ଗର ଗଜପତି ଥିଲେ ଭୋଇବଂଶର ମୁକୁନ୍ଦଦେବ ।ଯଦୁରାଜ ରାଜ୍ୟ ପ୍ରାପ୍ତିପରେ ମୁକୁନ୍ଦଦେବଙ୍କୁ ଦେଖାକରି ବଙ୍କାଡ଼ ରାଜ୍ୟର ଆନୁଗତ୍ୟ ଜଣାଇଥିବାରୁ ମୁକୁନ୍ଦଦେବ ରାଜା ଯଦୁରାଜ ମାନସିଂହଙ୍କଠାରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ । ସେ କଳିଙ୍ଗାଧିପତି ମୁକୁନ୍ଦଦେବଙ୍କୁ ଦେଖାକଲାବେଳେ ଦୁଇହସ୍ତରେ ଦୁଇଟି ଖଣ୍ଡା ନେଇଯାଇଥିଲେ । ଏହାର କାରଣ ମୁକୁନ୍ଦଦେବ ପଚାରିବାରୁ ଯଦୁରାଜ ଗୋଟିକରେ ନିଜରାଜ୍ୟକୁ ରକ୍ଷା କରିବାକୁ ଓ ଅନ୍ୟଟିରେ ଛାମୁଙ୍କ ମୂଲକକୁ

ରକ୍ଷା କରିବାକୁ ଦୃଢ କଣ୍ଠରେ କହିଥିବାରୁ ଗଜପତି ଅତ୍ୟନ୍ତ ପ୍ରୀତ ହୋଇ ଏହାଙ୍କୁ ମାନସିଂହ ଉପାଧିରେ ଭୂଷିତ କରାଇଥିଲେ । ପରବର୍ତ୍ତୀ ସମୟରେ ମୁକୁନ୍ଦଦେବଙ୍କ ଚିର ଶତ୍ରୁ ପଠାଣ ସେନାପତି ସୁଲେମାନଙ୍କ ସହ ଯୁଦ୍ଧବେଳେ ଯଦୁରାଜ ମାନସିଂହ ଗୋଟିଏ ଦୁର୍ଦ୍ଧର୍ଷ ସେନାଦଳର ନେତୃତ୍ୱ ନେଇ ଯୁଦ୍ଧକ୍ଷେତ୍ରରେ ସାହସିକ ପଦକ୍ଷେପ ନେଇ ଗଙ୍ଗାନଦୀ ପର୍ଯ୍ୟନ୍ତ ସୁଲେମାନଙ୍କୁ ହଟାଇ ଦେଇଥିବାରୁ ପୁନର୍ବାର ଯଦୁରାଜ ମାନସିଂହ ହରିଚନ୍ଦନ ଭ୍ରମରବର ରାୟ ଉପାଧିରେ ଭୂଷିତ ହୋଇଥିଲେ । ସେହିଦିନଠାରୁ ପାରିକୁଦ ରାଜବଂଶର ରାଜାମାନଙ୍କ ଆଦ୍ୟରେ ଏହି ଉପାଧି ଏବେ ମଧ୍ୟ ଯୁକ୍ତ ହୋଇଚାଲିଛି ।

ଯଦୁରାଜ ମାନସିଂହଙ୍କ ଦୁର୍ଦ୍ଧର୍ଷ ସେନା ଓ ପାଇକ ସେତେବେଳେ ସମଗ୍ର କଳିଙ୍ଗରେ ଗୌରବ ଅର୍ଜନ କରିଥିଲେ । ଏହାପରେ ବଙ୍କାଡ଼ ରାଜ୍ୟକୁ ଲାଗି ଚିଲିକା ହ୍ରଦର ଦ୍ୱୀପ ଗୁଡ଼ିକୁ ପରିକ୍ରମା କରିବାକୁ ରାଜା ଯଦୁରାଜ ମାନସିଂହ ମନସ୍ଥ କରି ବାହାରିଲେ । ସେତେବେଳେ ପାରିକୁଦ ଦ୍ୱୀପମାନଙ୍କରେ ଆଜିଭଳି ଏତେ ଲୋକ ବାସକରୁନଥିଲେ । ତଥାପି ଗୁରୁବାଇଠାରେ କେତେକ ବ୍ରାହ୍ମଣ ଓ ମୋରଡ଼ାରେ କେତେକ ଗୋଲା ଜାତିର ଲୋକ ବାସ କରୁଥିଲେ । ସେହି ଗୋଲାମାନଙ୍କ ମୁଖ୍ୟ ଏକ ଧନୀ ଗୋଲା ଶନି ପାଇକରାଏ ଯଦୁରାଜଙ୍କୁ ସମ୍ମାନ ନ ଦେବାରୁ ଯଦୁରାଜଙ୍କ ସହ ଯୁଦ୍ଧରେ ପରାସ୍ତ ହେଲା ଓ ତାହାର ସମସ୍ତ ସମ୍ପତ୍ତି ଯଦୁରାଜ ନିଜ ରାଜ୍ୟରେ ମିଶାଇଲେ ।

ପରେ ପରେ ମୋଗଲ ସମ୍ରାଜ୍ୟର ପ୍ରଖ୍ୟାତ ମନ୍ତ୍ରୀ ତୋଡ଼ରମଲ୍ଲଙ୍କ ସହ ଦେଖାକରି ଯଦୁରାଜ ନିଜର ବିଚକ୍ଷଣତା ତଥା ଆନୁଗତ୍ୟ ଦର୍ଶାଇଥିବାରୁ ମୋଗଲ ମନ୍ତ୍ରୀ ସମସ୍ତ ପାରିକୁଦ ଅଞ୍ଚଳକୁ ଯଦୁରାଜଙ୍କ ରାଜ୍ୟ ସହ ଶିଶାଇବାକୁ ଅନୁମତି ପ୍ରଦାନ କଲେ । ଏଣୁ ବଙ୍କାଡ଼ ସହ ପାରିକୁଦ ଯଦୁରାଜଙ୍କ ଅଧୀନରେ ଶାସିତ ହେଲା । ଯଦୁରାଜଙ୍କ ରାଜତ୍ୱରେ ବିଖଣ୍ଡିତ କଙ୍ଗୋଦରେ ପୁଣି ଶାନ୍ତି ଓ ଗୌରବ ଫେରି ଆସିଲା ।

ଯଦୁରାଜ ଅନେକ ଶିବ ମନ୍ଦିର ଓ ଦେବୀମନ୍ଦିରର ପୁନରୁଦ୍ଧାର କରାଇ ମଣ୍ଡପମାନ ନିର୍ମାଣ କରାଇଥିବାର ଅନେକ ମତ ଦିଅନ୍ତି । ସେ ଭଗବତୀ ଦର୍ଶନରେ ପ୍ରତିମାସରେ ଥରେ ଦୁଇଥର ଆସୁଥିବାର ଅନେକ କହନ୍ତି । ପୁନଶ୍ଚ ଭଗବତୀଙ୍କ ଦର୍ଶନ କରିବାପରେ ସେ ଏ ଦେବୀମନ୍ଦିର ପରିଚାଳନା ପାଇଁ ୨୪ମାଣ ଜମି ଖଞ୍ଜିଦେଇଥିବାର ରେକର୍ଡ କୁହେ । କିନ୍ତୁ ଦଶହରାବେଳର ମେରିଆ ପର୍ବ କନ୍ଧମାନଙ୍କ କର୍ତ୍ତୃତ୍ୱରେ ଥିଲା । ଏହାଙ୍କ ସମୟରେ ତନ୍ତ୍ରବିଦ୍ୟା ପୂର୍ବଭଳି ପ୍ରାଧାନ୍ୟ ଲାଭ କରିଥିଲେ ମଧ୍ୟ ରାଜକୀୟ ପୃଷ୍ଠପୋଷକତା ଲାଭ କରି ପାରିନଥିଲା । ଯଦୁରାଜଙ୍କ ସମୟରେ ବୈଷ୍ଣବଧର୍ମ ମଧ୍ୟ ଆଦୃତ ହେଉଥିଲା । ରେମୁଣାର ବିଶିଷ୍ଟ ବାବାଜୀ ଶ୍ୟାମନନ୍ଦଙ୍କ ଶିଷ୍ୟ ରସିକାନନ୍ଦ କିଛିଦିନ ବାଣପୁର ଆସି ମଠ ସ୍ଥାପନ କରି ବୈଷ୍ଣବ ଧର୍ମର ପ୍ରଚାର କରିଥିଲେ । ସେ ଏକ ଦୁଷ୍ଟ ପାଗଳ ହାତୀର ମୁଣ୍ଡକୁ ଠିକ୍ କରିଥିବାରୁ ହାତୀ ବନସ୍ତକୁ ଫେରିଯାଇଥିଲା । ଯେଉଁସ୍ଥାନରେ ଏହି ହାତୀର ମୁଣ୍ଡ ଠିକୁ ହୋଇଥିଲା ତାହାକୁ ହାତୀମୁଣ୍ଡା କୁହାଗଲା । ବୋଧହୁଏ ରସିକାନନ୍ଦଙ୍କ ସେହି ମଠ ଅନ୍ତରକିଆରୀ ସମୀପରେ ଥିଲା । ରାଜତ୍ୱର କିଛିବର୍ଷପରେ ଯଦୁରାଜ ମାନସିଂହ ଦଶହରା ବେଳେ ବିଶିଷ୍ଟ ପାଇକ ଓ ସୈନ୍ୟମାନଙ୍କୁ ପୁରସ୍କୃତ କରାଇଥିବାର ବ୍ୟବସ୍ଥା କରିଥିଲେ । ଆଜିର ଦଶହରା ତୋଟା ଏଥିପାଇଁ ପ୍ରସିଦ୍ଧ ଥିଲା । ବ୍ରାହ୍ମଣମାନେ ନଡ଼ିଆ ଓ ପଇତା ଦେଇ ରାଜାଙ୍କୁ ଆଶୀର୍ବାଦ କରୁଥିଲେ ।

ଏହାଙ୍କ ସମୟରେ କୃଷିର ଉନ୍ନତି ପାଇଁ ବିଶିଷ୍ଟ କାର୍ଯ୍ୟମାନ ଏ ଅଞ୍ଚଳରେ କରାଯାଇଥିଲା । ଯେଉଁ ଗ୍ରାମର କୃଷି ଉତ୍ପାଦନ ବିଶେଷଭାବେ ବୃଦ୍ଧି ପାଉଥିଲା ସେମାନଙ୍କୁ ରାଜା ଯଦୁରାଜ ସମ୍ମାନିତ କରାଉଥିଲେ । ଆଜିର ସିରେଇପୁର ସେ ସମୟରେ କୃଷି ଉତ୍ପାଦନରେ ବିଶେଷ ଉତ୍କର୍ଷ ଲାଭ କରିଥିବାରୁ ଏହାକୁ ଶ୍ରୀପୁର ନାମ ଦିଆଯାଇଥିବାର କେତେକ କୁହନ୍ତି । ପରବର୍ତ୍ତୀକାଳରେ ଅପଭ୍ରଷ୍ଟ

ହୋଇ ଏହା ଶିରେଇପୁର ରୂପେ ନାମିତ ହୋଇଥିବାର ମନେହୁଏ । ସେହିଭଳି ଆଜିର ସୁନାଖଳା ଗ୍ରାମ ମୁଣ୍ଡପିଛା ଆୟ ତଥା କୃଷି ଉତ୍ପାଦନରେ ଅତ୍ୟନ୍ତ ପରାକାଷ୍ଠା ଲାଭ କରିଥିଲା । ଦିନେ ରାଜା ଯଦୁରାଜ ଏହି ଅଞ୍ଚଳ ପରିକ୍ରମା କରୁଥିବାବେଳେ ପ୍ରତ୍ୟେକଙ୍କ ବାଡ଼ିପଟେ ବିରାଟ ଧାନ ଗଦା ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଓ ଖଳାମାନଙ୍କରେ ସୁନାଭରିଛି ବୋଲି କହି ଏହି ଗାଁର ନାମ ସୁନାଖଳା ରଖିଥିବାର କେତେକ କୁହନ୍ତି । ସେହିଭଳି ଭାଟପଡ଼ାର ଭାଟମାନେ ରହୁଥିବାରୁ ରାଜା ଯଦୁରାଜ ଏହି ଅଞ୍ଚଳରେ ଅନେକ ଆଖଡ଼ାଗୃହ କରାଇ ପାଇକମାନଙ୍କୁ ଶିକ୍ଷା ଦାନ କରାଉଥିଲେ । ସୁରକ୍ଷା ଦୃଷ୍ଟିରୁ ଓଡ଼ଗାଁ, ଦେଓଗାଁ, ଭାଟପଡ଼ା, ଗମ୍ଭାରୀମୁଣ୍ଡା ଅଞ୍ଚଳରେ ବହୁ ବୀର ପରାକ୍ରମୀ ଭାଟ ଓ ଚାଟମାନେ ରହୁଥିବାରୁ ଏହାକୁ ସୁରକ୍ଷାର ଗମ୍ଭୀରା କୁହାଯାଉଥିଲା । କାଳକ୍ରମେ ଏହା ଗମ୍ଭାରୀମୁଣ୍ଡା ନାଁରେ ପରିଚିତ ହେଲା ।

ରାଜା ଯଦୁରାଜଙ୍କ ଅମଳରେ ଏହି ଅଞ୍ଚଳର ଜମିବାଡ଼ି ମୋଗଲ ସରକାରଙ୍କ ନୀତି ଅନୁଯାୟୀ ଦାଖଲ ଖାରଜ ହୋଇଥିବାର କୁହାଯାଏ । ଏହି ରାଜା କର ଆକାରରେ ଜମିରୁ ଉତ୍ପାଦିତ ଧାନ, ମୁଗ ଓ ଅନ୍ୟାନ୍ୟ ଦ୍ରବ୍ୟ ଗ୍ରହଣ କରୁଥିଲେ । ବିଭିନ୍ନ ଜାଗାରେ ବିଷୟପତି ଓ ମହାପାତ୍ରମାନେ ଶାସନ ଦାୟିତ୍ୱରେ ରହି ରାଜ୍ୟର ଶାସନ ସୁଚାରୁ ରୂପେ ଚଳାଇଥିଲେ ।

ଯଦୁରାଜଙ୍କ ବ୍ୟକ୍ତିଗତ ଜୀବନ ଅତ୍ୟନ୍ତ ଶୃଙ୍ଖଳିତ ଥିଲା । ତାଙ୍କର କୌଣସି ରାଜାଙ୍କ ସହ ସମ୍ବନ୍ଧ ନଥିଲା । ବଳଭଦ୍ର ରଣାର ଅଭିଶାପ ଓ କୁଳପୁରୋହିତଙ୍କ ପରାମର୍ଶ ଯୋଗୁଁ ସେ ଜଣେ ବ୍ରାହ୍ମଣ କନ୍ୟାକୁ ବିବାହ କରିବାକୁ ଇଚ୍ଛା କରିଥିବାରୁ ସେତେବେଳର ରେଙ୍ଗାଲ ଗ୍ରାମବାସୀ ସଦାଶିବ ମିଶ୍ରଙ୍କ ଦୁହିତାଙ୍କ ସହ ବିବାହ କରିଥିଲେ । ଏଣୁ ତତ୍କାଳୀନ ବ୍ରାହ୍ମଣ ସମାଜ ଏଥିରେ ଉତ୍କ୍ଷିପ୍ତ ହୋଇ ସଦାଶିବ ମିଶ୍ରଙ୍କୁ ଏକଘରକିଆ କରାଇ ବିଟାଳ ବା ଭିଟମିଶ୍ର ନାମରେ

ନାମିତ କରାଇଥିବାର କୁହାଯାଏ ।ଏହାଙ୍କ ପରେ ମଧ୍ୟ ଏହି ବଂଶର ରାଜାମାନେ ବ୍ରାହ୍ମଣ କନ୍ୟା ବିବାହ କରିବା ସଂଗେ ସଂଗେ ନିଜ ନିଜ କନ୍ୟାମାନଙ୍କୁ ବିବାହ ନକରାଇ ଅବିବାହିତ ରଖୁଥିବା ଜଣାଯାଏ । ସେହିଭଳି ସେ ବିଷ୍ଣୁଭକ୍ତ ଥିବାରୁ ଜଗନ୍ନାଥଙ୍କ ପ୍ରତି ତାଙ୍କର ଆପାର ଭକ୍ତି ଥିଲା । ଏଣୁ ସେ ବଙ୍କାଡ଼ଗଡ଼ରେ ଶ୍ରୀ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରାଇ ତାଙ୍କ ନାମ ଶ୍ରୀ ରଙ୍ଗନାଥ ରଖାଇଥିଲେ । କେତେକ କୁହନ୍ତି, ଏହି ମୂର୍ତ୍ତି ଆଗରୁ ମଧ୍ୟ ଶାଳିମା ନଗରୀରେ ପୂଜା ପାଉଥିଲେ ।

ଅନ୍ୟଏକ କିମ୍ବଦନ୍ତୀ ଅନୁଯାୟୀ ( ପରବର୍ତ୍ତୀକାଳରେ ନୀଳଶୈଳରେ ପ୍ରକାଶିତ ) ରାଜା ଯଦୁରାଜ ମାନସିଂହ ( ଜଣେ ପଳାତକ ଯୁବରାଜ ) ବଙ୍କାଡ଼ ଗଡ଼ରେ ଥିବା ତତ୍କାଳୀନ ବିଶାଲ ରାଜା ବଳଭଦ୍ର ରଣା ଦ୍ୱାରା ଆଶ୍ରିତ ହୋଇଥିଲେ । ସେତେବେଳେ କନ୍ଧମାନଙ୍କର ପୁଷପୂର୍ଣ୍ଣିମାର ମେରିଆ ପର୍ବ ଅତ୍ୟନ୍ତ ପ୍ରିୟ ପର୍ବଥିଲା । ଏହି ପର୍ବରେ ପ୍ରତିବର୍ଷ ପୁଷ୍ଯ ପୂର୍ଣ୍ଣିମା ଦିନ ନରବଳି ଦିଆଯାଉଥିଲା । ଯାହାକୁ ବଳି ଦିଆଯାଉଥିଲା ତାହାକୁ ଏକ ମେରିଆ ଖୁଣ୍ଟିରେ ବାନ୍ଧିଦେବାପରେ ହଜାର ହଜାର କନ୍ଧ ଆଦିବାସୀ ବିଭିନ୍ନ ନୃତ୍ୟ ବାଦ୍ୟ ତଥା ନାଚଗୀତରେ ବିଭୋର ହୋଇ ବଳିକୁ ପୁଷ୍ପଚନ୍ଦନ ଦେଇ ପୂଜା କରୁଥିଲେ ଓ ଶେଷରେ ତାହାକୁ ଦେବୀଙ୍କ ଆଗରେ ଖଣ୍ଡ ଖଣ୍ଡ କରିହାଣି ବଳି ଦିଆଯାଉଥିଲା ।

ଯୁବରାଜ ଯଦୁରାଜ ବଳଭଦ୍ର ରଣା ଘରେ ଆଶ୍ରିତ ଥିବା ବେଳେ ସେହି ବର୍ଷ ଏକ ଗୁଗ୍‌ଣ ବାଳକକୁ ରଣା ଆଣି ବଳି ପାଇଁ ରଖିଥିଲା । ଚକ୍ରାନ୍ତ କରି ଯୁବରାଜ ଯଦୁରାଜ ଏହି ବାଳକକୁ ରାତାରାତି ନେଇ ଅନ୍ୟ ସ୍ଥାନରେ ଛାଡ଼ି ଆସିଲେ । ଏଣୁ ପୁଷପୂର୍ଣ୍ଣିମା ଦିନ ପ୍ରଭାତରୁ ଯେତେବେଳେ ହଜାର ହଜାର ଆଦିବାସୀ କନ୍ଧ ଭିଭିନ୍ନ ବେଶ ପୋଷାକରେ ସଜ୍ଜିତ ହୋଇ ଦେବୀଙ୍କ ନିକଟରେ ପହଞ୍ଚିଲେ, ମେରିଆ ନଥିବା ଜାଣି କ୍ରୋଧରେ ବଳଭଦ୍ର ରଣାଙ୍କୁ ଆକ୍ରମଣ କଲେ ଓ ତାହାକୁ ମେରିଆ ରୂପେ ମେରିଆ ଖୁଣ୍ଟିରେ ବାନ୍ଧି ଯଦୁରାଜାଙ୍କୁ ରାଜା ରୂପେ

ଅଭିଷିକ୍ତ କରାଇ ପ୍ରଥମେ ମେରିଆକୁ ଖଣ୍ଡାରେ ଚୋଟ ଦେବାପାଇଁ ଯଦୁରାଜଙ୍କୁ ବାଧ୍ୟ କଲେ ।

ରାଜ୍ୟର ରାଜା ରୂପେ ବଳଭଦ୍ର ରଣାଙ୍କୁ ଖଣ୍ଡାରେ ପ୍ରଥମ ଚୋଟ ଯଦୁରାଜ ମାନସିଂହ ଦେଲାବେଳେ ବଳଭଦ୍ର ରଣା ଏହାଙ୍କ ବଂଶରେ କେହି ରହିବେ ନାହିଁ ବୋଲି ଅଭିଶାପ ଦେଇଥିଲେ ।

ଏହି ଅଭିଶାପର ଖଣ୍ଡନପାଇଁ ବ୍ରାହ୍ମଣ ପୁରୋହିତମାନେ ଏହି ରାଜପରିବାରରେ ବ୍ରାହ୍ମଣକନ୍ୟା ବିବାହକୁ ଏକ ବିଧିରୂପେ ପ୍ରଚଳିତ କରାଇଥିଲେ ।

ଯଦୁରାଜ ରାଜା ହେବାପରେ ବଳଭଦ୍ର ରଣା ରହୁଥିବା ଘରେ ନିଜର ଅସ୍ଥାୟୀ ଗଡ଼ ପ୍ରତିଷ୍ଠା କରିଥିଲେ ମଧ୍ୟ ବଳଭଦ୍ରର ଅତୃପ୍ତ ଆତ୍ମା ବହୁ ବିପ୍ରାତ ଘଟାଇ ଥିବାରୁ ପରବର୍ତ୍ତୀ କାଳରେ ବଙ୍କାଡ଼ଗଡ଼କୁ ନିଜର ରାଜଧାନୀ ଘୁଞ୍ଚାଇ ନେଲେ ।

ଯଦୁରାଜଙ୍କ କନ୍ଧ ପାଇକମାନଙ୍କ ଅବ୍ୟର୍ଥ ଧନୁଶର ଯୁଦ୍ଧରେ ବହୁ ପଠାଣ ସୈନ୍ୟ ହତାହତ ହୋଇ ବହୁବାର ଫେରିଯାଇଥିବାର ଇତିହାସରୁ ଉଦ୍ଧୃତ । ଏଣୁ ବାଣପୁର ପାଇକ ସେନା ସେତେବେଳେ ପଠାଣ ଓ ମୋଗଲ ମାନଙ୍କ ପାଇଁ ଆତଙ୍କ ସୃଷ୍ଟି କରିଥିଲେ । ମୁକୁନ୍ଦଦେବଙ୍କ ସେନା ସହ ବାଣପୁର କନ୍ଧ-ପାଇକମାନେ ମିଶି ପଠାଣ ମାନଙ୍କୁ ସୁଦୂର ମେଦିନପୁର ପର୍ଯ୍ୟନ୍ତ ହଟାଇନେଇଥିବାରୁ ଗଜପତି ମୁକୁନ୍ଦଦେବ ରାଜା ଯଦୁରାଜ ମାନସିଂହଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ ।

ଉକ୍ତ ଯୁଦ୍ଧରେ ବାଣପୁରର ବହୁ ପାଇକ ସୈନ୍ୟ ନିହତ ହୋଇଥିବାର କେତେକ ଐତିହାସିକଙ୍କ ମତ । ଏହି ବୀର ପାଇକ ଶହିଦ ମାନଙ୍କୁ ମନେରଖିବା ପାଇଁ ରାଜା ଯଦୁରାଜ ବିଶେଷ ଭାବରେ ମୃତ୍ୟୁ ଲଭିଥିବା ଦୁଇଟି ଗାଁର ନାମ

ପ୍ରାଣଦେଇପୁର ଓ ଜୀବନଦେଇପୁର ନାମରେ ନାମିତ କରି ଅପର୍ଯ୍ୟାପ୍ତ ଅର୍ଥ ସହାୟତା ଦେଇଥିଲେ ।

ରାଜା ଯଦୁରାଜ ମାନସିଂହ ଅତ୍ୟନ୍ତ ସ୍ୱାଭିମାନୀ ଥିଲେ। ୧୬୦୬ ମସିହାରେ ଗଜପତି ପୁରୁଷୋତ୍ତମ ଦେବ ଓଡ଼ିଶାର ସୁବେଦାର ହାସିମ୍ ଖାଁଙ୍କ ଦ୍ୱାରା ନିଯୁକ୍ତ ନିଷ୍ଠୁର କେଶୋଦାସର ଜଗନ୍ନାଥ ମନ୍ଦିର ଆକ୍ରମଣରେ ଭୟଭୀତ ହୋଇ ନିଜର କନ୍ୟାଙ୍କୁ ମୋଗଲ ରାଣୀମହଲକୁ ଦେବା ତଥା ଭଉଣୀଙ୍କୁ କେଶୋଦାଶଙ୍କୁ ବିବାହ ଦେଇଥିବାରୁ ଯଦୁରାଜ ମାନସିଂହ ଖୋର୍ଦ୍ଧା ରାଜାଙ୍କ ସହ ସମସ୍ତ ସମ୍ପର୍କ ଛିନ୍ନ କରିଥିଲେ ଓ ପେସ୍‌କିସ୍ ବନ୍ଦ କରିଥିଲେ । ଯଦୁରାଜ ମାନସିଂହ ହରିଚନ୍ଦନ ଭ୍ରମରବର ରାୟ ବଙ୍କାଡ଼ଗଡ଼ର ପୁନରୁଦ୍ଧାର କରାଇ ଏହି ଅଞ୍ଚଳକୁ ଏକ ଉନ୍ନତ ଶକ୍ତିଶାଳୀ ରାଜ୍ୟ ରୂପେ ପୁନର୍ବାର ପ୍ରତିଷ୍ଠା କରିପାରିଥିଲେ । ସେ ୧୬୧୪ ମସିହାରେ ପରଲୋକ ଗମନ କରିବା ପରେ ତାଙ୍କର ସୁପୁତ୍ର ଗୋବିନ୍ଦ ଚନ୍ଦ୍ର ମାନସିଂହ ବଙ୍କାଡ଼ର ରାଜା ହେଲେ ।

# କୁମାନ୍ତୁୟରେ ବଙ୍କାଡ଼ ଗଡ଼ର ରାଜା

| | |
|---|---|
| ଯଦୁରାଜ ମାନସିଂହ | - ୧୫୬୬ ରୁ ୧୬୧୪ |
| ଗୋବିନ୍ଦ ଚନ୍ଦ୍ର ମାନସିଂହ | - ୧୬୧୫-୧୬୪୭ |
| କପିଳେଶ୍ୱର ମାନସିଂହ | - ୧୬୪୭-୧୬୪୮ |
| ଜୀବରାଜ ମାନସିଂହ | - ୧୬୪୮-୧୬୫୦ |
| ଅଚ୍ୟୁତରାଜ ମାନସିଂହ | - ୧୬୫୦-୧୬୫୫ |
| ରଘୁନାଥ ମାନସିଂହ | - ୧୬୫୫-୧୬୫୬ |
| କଟରାଜ ମାନସିଂହ | - ୧୬୫୬-୧୬୫୭ |
| ଜଗନ୍ନାଥ ମାନସିଂହ | - ୧୬୫୭-୧୬୩୭ |
| ଶ୍ରୀନିବାସ ମାନସିଂହ | - ୧୬୩୭-୧୬୬୮ |
| ରାଜା ମଧୁସୁଦନ ମାନସିଂହ | - ୧୭୬୮-୧୭୭୫ |
| ଦଯ୍ନିଧି ମାସିଂହ | - ୧୭୭୧-୧୭୭୬ |
| ରାମଚନ୍ଦ୍ର ମାନସିଂହ | - ୧୭୭୬-୧୭୭୯ |
| ହରିସେବକ ମାନସିଂହ | - ୧୭୭୯ |
| ( ଶେଷ ରାଜା ) | |

## ଗୋବିନ୍ଦ ଚନ୍ଦ୍ର ମାନସିଂହ ହରିଚନ୍ଦନ
## ( ୧୬୧୫ ରୁ ୧୬୪୭ )

ରାଜା ରାଜା ଯଦୁରାଜଙ୍କ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ଗୋବିନ୍ଦ ଚନ୍ଦ୍ର ମାନସିଂହ ୧୬୧୫ ଖ୍ରୀଷ୍ଟାବ୍ଦରେ ବଙ୍କାଡ଼ର ରାଜା ହେଲେ । ରାଜଗାଦିଆସୀନ ହେବାପରେ ସେ ତତ୍କାଳୀନ ଗଜପତି ଓ ମୋଗଲ ଶାସକମାନଙ୍କ ସହ ଦେଖାକରି ପୁରୀ ଶ୍ରୀଜଗନ୍ନାଥ ଦର୍ଶନ କରିବା ପରେ ବଙ୍କାଡ଼ରେ ସେ ଏକ ଜଗନ୍ନାଥ ସଂସ୍କୃତି ପ୍ରତିଷ୍ଠା ପାଇଁ ମନସ୍ଥିର କରିଥିଲେ ।

ସେ ଜଣେ ଅତ୍ୟନ୍ତ ଧାର୍ମିକ ପ୍ରଜାବତ୍ସଳ ରାଜା ଥିଲେ । ବିଷ୍ଣୁଭକ୍ତିରେ ଭିଭୋର ଶ୍ରୀ ଗୋବିନ୍ଦ ମାନସିଂହ ନିଜ ପିତାଙ୍କ ଦ୍ୱାରା ପ୍ରତିଷ୍ଠିତ ଦେବୀ ବିରଜାଇ ଓ ରାଜଦରବାରରେ ପ୍ରତିଷ୍ଠିତା ଦେବୀ ଭୁବନେଶ୍ୱରୀ ( କନକ ଦୁର୍ଗା ) ଙ୍କ ପୂଜା ପାର୍ବଣ ବିଧିମୁତାବକ ଅନେକ ବ୍ରାହ୍ମଣ ପୁରୋହିତ ମାନଙ୍କଦ୍ୱାରା କରାଇଥିଲେ ମଧ୍ୟ ଶ୍ରୀ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରିବା ପାଇଁ ସେ ଏକପ୍ରକାର ପାଗଳ ପ୍ରାୟ ହେଉଥିଲେ । ଏଣୁ ବଙ୍କାଡ଼ ଗଡ଼ରେ ଏକ ଜଗନ୍ନାଥ ସଂସ୍କୃତି ପ୍ରତିଷ୍ଠା କରି ସେ ଶ୍ରୀ ରଙ୍କନାଥଙ୍କୁ ପ୍ରତିଷ୍ଠା କରାଇଥିବାର ଅନେକ ପଣ୍ଡିତ କୁହନ୍ତି । ଅବଶ୍ୟ ଏହା ପ୍ରମାଣ କରିବା ଦୁରୂହ ବ୍ୟାପାର । ତେବେ ଶାଳିମା ନଗରୀରେ ଥିବା ବହୁପୁରାତନ ଜଗନ୍ନାଥ ମୂର୍ତ୍ତିର ପୁନରୁଦ୍ଧାର କରାଇ ବଙ୍କାଡ଼ ଗଡ଼ରେ ସ୍ଥାପନ କରିବା ଆଉ କେତେକ ମତ ଦିଅନ୍ତି । କେତେକ କୁହନ୍ତି, ଜଗନ୍ନାଥଙ୍କ ପ୍ରତି ସେ ରଙ୍କ ପରି ହେଉଥିବାରୁ ତାଙ୍କ ନାମ ଶ୍ରୀ ରଙ୍କନାଥ ଦେଇଥିଲେ ।

ସେହିପରି ଏକ ବିରାଟ ପୁଷ୍କରିଣୀ ଖୋଳାଇ ତାହାର ନାମ ଗୋପସାଗର ଦେଇଥିଲେ । ଏହି ଗୋପସାଗର ଏବେ ପୋତି ହୋଇଯାଇଥିଲେ ମଧ୍ୟ ଆଜିର ନୀଳାଦ୍ରିପ୍ରସାଦ ଡ଼ାକ୍ତରଖାନାର ପଶ୍ଚାତ୍ ଭାଗରେ ଥିବା ବସ୍ତୀର୍ଣ୍ଣ

ଖାଲୁଆ ସମତଳ ଅଞ୍ଚଳକୁ ଆଜି ମଧ୍ୟ ଲୋକେ ଗୋପସାଗର ଜମି କୁହନ୍ତି । ଏହି ଗୋପ ସାଗରରେ ରାଣୀଗାଧୁଆ ଘାଟ, ଘୋଡ଼ାଗାଧୁଆ ତୁଠ ଏବେମଧ୍ୟ ସେହିଭଳି ନାମରେ ଖ୍ୟାତ। ଏହି ସାଗରର ଗୋଟିଏ ପାର୍ଶ୍ୱରେ ସୈନ୍ୟମାନେ ସେମାନଙ୍କ ଖଣ୍ଡା ଓ ଅସ୍ତ୍ରଶସ୍ତ୍ର ସବୁ ମାଜି ସଫା କରୁଥିବାରୁ ଏହାର ଗୋଟିଏ ଅଂଶକୁ ଖଣ୍ଡାଧୁଆ ତୁଠ ମଧ୍ୟ କୁହାଯାଉଥିଲା । ଯାହା ଏବେ ମଧ୍ୟ ଲୋକମୁଖରେ କଥିତ।



(ମାଳପୁଞ୍ଜି ଆମାଠାରେ ଖୋଦିତ ଏକ ଶିବ ମନ୍ଦିର ଓ ବୃହଦାକାର ଶିବଲିଙ୍ଗ)

ସେହିଭଳି ଶ୍ରୀ ରଙ୍ଗନାଥଙ୍କ ସେବାପୂଜାପାଇଁ ସେ ଏକ ବିରାଟ ଆମ୍ବ ତୋଟା ସୃଷ୍ଟି କରିଥିଲେ ଯାହାକୁ ମଧୁବନ ତୋଟା କୁହାଯାଉଥିଲା । ଏବେ ମଧ୍ୟ ବିରଜାଇ ସମୀପରେ ସେହି ଅଞ୍ଚଳକୁ ମଧୁବନ ତୋଟା କୁହାଯାଏ । ସେ ପରମ ବିଷ୍ଣୁଭକ୍ତ ହୋଇଥିବାରୁ ବୋଧହୁଏ ଶ୍ରୀକୃଷ୍ଣଙ୍କ ଲୀଳାଖେଳର ଅବଲୋକନରେ ମଧୁବନ ତୋଟା ଓ ଗୋପସାଗର ଭଳି ନାମ ଦେଇଥିବାର ଅନୁମିତ ହୁଏ । ବିରଜାଇ ମନ୍ଦିରଠାରୁ ବଙ୍କାଡ଼ ଗଡ଼ ପର୍ଯ୍ୟନ୍ତ ଏକ ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳରେ ଏକ ସୁନ୍ଦର ସୁପ୍ରସସ୍ତ ରାସ୍ତା କରାଇ ତାହାର ନାମ ବଡ଼ଦାଣ୍ଡ ଦିଆଯାଇଥିଲା । ପ୍ରବାଦ କୁହେ, ଏହି ବଡ଼ଦାଣ୍ଡର ଦୁଇପାଖରେ ପାତ୍ର, ମନ୍ତ୍ରୀ,

ଓ ପାରିଷଦମାନଙ୍କପାଇଁ ଅନେକ ବାସଗୃହ ରହିଥିଲା । ଏହି ବଡ଼ଦାଣ୍ଡରେ ଶ୍ରୀ ରଙ୍କନାଥଙ୍କ ରଥଯାତ୍ରା ପ୍ରତିବର୍ଷ ବହୁ ଆଡ଼ମ୍ବରପୂର୍ଣ୍ଣ ଭାବରେ ଅନୁଷ୍ଠିତ ହେଉଥିଲା । ଏଣୁ ପ୍ରତିବର୍ଷ ଅକ୍ଷୟ ତୃତୀୟା ଠାରୁ ବାହୁଡ଼ା ପର୍ଯ୍ୟନ୍ତ ଏ ଅଞ୍ଚଳ ଲୋକାରଣ୍ୟ ହୋଇ ପଡୁଥିଲା । ବହୁ ଅଞ୍ଚଳରୁ ଲୋକମାନେ ଏହି ସମୟରେ ଆସି ଏଠାରେ ଶ୍ରୀ ରଙ୍କନାଥଙ୍କ ରଥଯାତ୍ରା ଦେଖିବାପାଇଁ ରୁଣ୍ଡ ହୋଇ ଗୋପସାଗରେ ସ୍ନାନ କରି ଅଶେଷ ଧର୍ମ ଅର୍ଜନ କରୁଥିଲେ ।

ଗୋବିନ୍ଦ ମାନସିଂହ ହରିଚନ୍ଦନ କେବଳ ଜଣେ ସୁଶାସକ ନଥିଲେ , ଜଣେ ଅତ୍ୟନ୍ତ ଶକ୍ତିଶାଳୀ ରାଜା ହିସାବରେ ମଧ୍ୟ ଖ୍ୟାତି ଲାଭ କରିଥିଲେ । ୧୬୨୮ରେ ମୋଗଲ ସୁବେଦାର ମକରମ ଖାଁ ( ମିର୍ଜା ମହମ୍ମଦ ବେଗ୍ ) ଖୋର୍ଦ୍ଧା ଆକ୍ରମଣ କରି ଗଜପତି ପୁରୁଷୋତ୍ତମ ଦେବଙ୍କୁ ପରାସ୍ତ କରିବା ପରେ



(ପୁଞ୍ଜିଆମାଠାରେ ଖୋଦିତ ମନ୍ଦିରର ଭଗ୍ନାବଶେଷ)

ପୁରୁଷୋତ୍ତମ ଦେବ ରଣପୁରର ଗଡ଼ମାଣକ୍ଷିଠାରେ ଲୁଚି ରହିଲେ । ମକରମ ଖାଁ ଭୟରେ ଓ ଗଜପତିଙ୍କ ଗୁପ୍ତ ନିର୍ଦ୍ଦେଶରେ ପୁରୀରୁ ଚତର୍ଦ୍ଧା ମୂର୍ତ୍ତିଙ୍କୁ ଚାପରେ ଅଣାଯାଇ ବାଣପୁର ଗବପଦର ଠାରେ ଅବସ୍ଥାପିତ କରାଗଲା । ଏହିଠାରେ ପ୍ରଭୁ ଜଗନ୍ନାଥଙ୍କର ନିସଙ୍କୁଡ଼ି ମଣୋହି କରାଯାଉଥିଲା । ବଙ୍କାଡ଼ର ରାଜା

ଗୋବିନ୍ଦ ମାନସିଂହଙ୍କ ପ୍ରଯତ୍ନ ଓ ସୁରକ୍ଷାବଳୟଭିତରେ ପ୍ରଭୁ ଜଗନ୍ନାଥ ଗବପଦରଠାରେ କିଛିଦିନ ଅବସ୍ଥାନ କରୁଥିବାବେଳେ ରାଜା ଗୋବିନ୍ଦ ମାନସିଂହ ଜଗନ୍ନାଥଙ୍କ ସେବା ପୂଜା ପାଇଁ ଏହି ଗ୍ରାମ ନିକଟରେ ଶିବିର ସ୍ଥାପନ କରି ରହି ସମସ୍ତ ସେବା କାର୍ଯ୍ୟ ନିଜେ ତଦାରଖ କରାଇଥିଲେ । ମକରମ ଖାଁ ୧୬୨୦ ମସିହାରେ ବିଦାୟ ନେବାପରେ ପୁରୁଷୋତ୍ତମ ଦେବ ପୁନର୍ବାର ଜଗନ୍ନାଥଙ୍କୁ ଆଣି ମନ୍ଦିର ପ୍ରବେଶ କରାଇଲେ । ସେତେବେଳେ ବାଣପୁରରୁ ନିଜର ସୈନ୍ୟ ସାମନ୍ତ ସହ ବହୁ ଆଡ଼ମ୍ବରରେ ଗବପଦରଠାରୁ ଜଗନ୍ନାଥଙ୍କୁ ରାଜା ଗୋବିନ୍ଦ ମାନସିଂହ ବିଦାୟ ଦେଇଥିଲେ ।

୧୬୨୦ ପରେ ପରେ ମୋଗଲ ସୁବେଦାର ହିସାବରେ ମିର୍ଜା ମହମ୍ମଦ ବେଗ୍ କାର୍ଯ୍ୟଭାର ବହନ କରି ସେତେବେଳର ବିଦ୍ରୋହୀ ସାହାଜାହାନଙ୍କ ଦାକ୍ଷିଣାତ୍ୟ ପଟୁ ହୋଇଥିବା ଅଭିଯାନକୁ ପ୍ରତିହତ କରିବା ପାଇଁ ଛତ୍ରଗଡ଼ଠାରେ ଘାଟି କରି ରହିଥିବାର ଇତିହାସରୁ ପ୍ରମାଣିତ । ଅତ୍ୟାଚାରୀ ମୋଗଲ ସୁବେଦାର ବିରୋଧରେ ସ୍ୱର ଉତ୍ତୋଳନ କରି ରାଜା ଗୋବିନ୍ଦଚନ୍ଦ୍ର ମାନସିଂହ ସେତେବେଳେ ସାହାଜାହାନଙ୍କୁ ସାହାଯ୍ୟ କରିବାକୁ ସ୍ଥିର କରିଥିଲେ । ଫଳରେ ସାହାଜାହାନଙ୍କ ସହ ମିଳିତ ହୋଇ ବାଣପୁରର ବୀର ପାଇକ ସେନାମାନେ ମୋଗଲମାନଙ୍କୁ ଖୋର୍ଦ୍ଧାରୁ ବିତଡ଼ିତ କରାଇବାରେ କ୍ଷମ ହୋଇଥିଲେ । ୧୬୨୧ ମସିହାରେ ମୋଗଲ ସୁବେଦାର ବାକର୍ ଖାଁ ( ମିର୍ଜା ମହମ୍ମଦ ବେଗ୍ ) ର ଅତ୍ୟାଚାରରେ ସମଗ୍ର ଖୋର୍ଦ୍ଧା ରାଜ୍ୟରେ ଘୋର ବିପର୍ଯ୍ୟୟ ଘଟିଥିବାର ଇତିହାସରୁ ପ୍ରମାଣିତ । ସେହି ସମୟରେ ଦାକ୍ଷିଣାତ୍ୟରୁ ଶାହାଜାହାନ୍ ସୈନ୍ୟଚାଳନା କରି ଛତ୍ରଗଡ଼ଠାରେ ଶିବିର ସ୍ଥାପନ କରିଥିବାବେଳେ ରାଜା ଗୋବିନ୍ଦ ମାନସିଂହ ବଙ୍କାଡ଼ର ଦୁର୍ଦ୍ଧର୍ଷ ପାଇକ ସେନାମାନଙ୍କୁ ଧରି ତାହାଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ଏଣୁ ମୋଗଲମାନଙ୍କୁ ଖୋର୍ଦ୍ଧାରୁ ଶାହାଜାହାନ୍ ସହଜରେ ବିତଡ଼ିତ କରିପାରିଥିଲେ । ଫଳରେ ରାଜା ଗୋବିନ୍ଦ ମାନସିଂହ ସମ୍ରାଟ ସାହାଜାହାନଙ୍କ ଅତି ପ୍ରିୟ

ହୋଇପାରିଥିଲେ ।

୧୯୩୨ ମସିହାରେ ପୁନର୍ବାର ଅର୍ଥପିପାସୁ ଅତ୍ୟାଚାରୀ ବାକର୍ ଖାଁ ଖୋର୍ଦ୍ଧା ଆକ୍ରମଣ କରି ୬୦୦ ଜମିଦାରଙ୍କୁ ବନ୍ଦି କରି ହତ୍ୟାକରିବା ପରେ ତାହାର ପ୍ରତିବାଦରେ ଆଠଗଡ଼, ଖଲ୍ଲିକୋଟ, କୋଦଳାର ଜମିଦାରମାନେ ଖଜଣା ବନ୍ଦ କରିଦେଲେ । ଏଣୁ ବାକର୍ ଖାଁ ଏହି କ୍ଷୁଦ୍ର ରାଜ୍ୟଗୁଡ଼ିକୁ ଯେତେବେଳେ ଆକ୍ରମଣ କରିଥିଲେ ମଧ୍ୟ ବଙ୍କାଡ଼ ରାଜ୍ୟ ଆକ୍ରମଣ କରିବାକୁ ସାହସ କରିପାରିନଥିଲା । କାରଣ ୧୯୨୧ ରେ ସେ ବଙ୍କାଡ଼ ରାଜା ଗୋବିନ୍ଦ ମାନସିଂହଙ୍କ ଦୁର୍ଦ୍ଧର୍ଷ ପାଇକସେନାମାନଙ୍କ ରଣକୌଶଳ ଦେଖି ଭୟଭୀତ ହୋଇଥିଲା ।

ସେତେବେଳେ ରାଜା ଗୋବିନ୍ଦଚନ୍ଦ୍ର ମାନସିଂହ ହରିଚନ୍ଦନପ ଏହି ନରପିଶାଚ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଅତୀତରେ ସାହାଯ୍ୟ କରିଥିବା ସମ୍ରାଟ ସାହାଜାହାନଙ୍କୁ ବାକର୍ ଖାଁର କୁକାର୍ଯ୍ୟ ଓ ଅତ୍ୟାଚାର ସମ୍ବନ୍ଧରେ ଅବଗତ କରାଇ ତାହାକୁ ବିତାଡ଼ିତ କରିଥିଲେ । ଏଣୁ ଏହାଙ୍କୁ ଖୋର୍ଦ୍ଧା ରାଜ୍ୟର ସମସ୍ତ କରଦରାଜାମାନେ ସେତେବେଳେ ଅତ୍ୟନ୍ତ ସମ୍ମାନ ଦେଉଥିଲେ । ଏହି ଅତ୍ୟାଚାରୀ ବାକର୍ ଖାଁଙ୍କୁ ବରଖାସ୍ତ କରିବା ପାଇଁ ତତ୍କାଳୀନ ଖୋର୍ଦ୍ଧା ରାଜା ନରସିଂହ ଦେବ ଗୋବିନ୍ଦ ମାନସିଂହଙ୍କୁ ସାହାଯ୍ୟ କରିନଥିବାରୁ ପରବର୍ତ୍ତୀକାଳରେ ଯେତେବେଳେ ତତ୍କାଳୀନ ମୋଗଲ ସୁବେଦାର ମହମ୍ମଦ ଜମାଲ ତିହରଣା ଖୋର୍ଦ୍ଧା ଆକ୍ରମଣ କଲା, ରାଜା ଗୋବିନ୍ଦ ମାନସିଂହ ଖୋର୍ଦ୍ଧା ରାଜା ନରସିଂହ ଦେବଙ୍କୁ ସାହାଯ୍ୟ କରିନଥିଲେ । ଫଳରେ ଗଜପତି ନରସିଂହ ଦେବ ଯୁଦ୍ଧରେ ନିହତ ହେଲେ ।

ପ୍ରବାଦ ଅଛି, କେତେକ ପଣ୍ଡିତ ବ୍ରାହ୍ମଣମାନଙ୍କୁ ଡ଼କାଇ ରାଜା

ଗୋବିନ୍ଦଚନ୍ଦ୍ର ମାନସିଂହ ତାଙ୍କ ବଂଶ ଉପରେ ଥିବା ବଳଭଦ୍ର ରଣାର ଅଭିଶାପ ଖଣ୍ଡନ ପାଇଁ ଉପାୟ ଚିନ୍ତା କରିଥିଲେ । ଏଥିରେ ବ୍ରାହ୍ମଣମାନେ ଆଜିର ଗତୀଶ୍ୱରଙ୍କ ପୀଠରେ ଶିବ ମୂର୍ତ୍ତି ସ୍ଥାପନା କରି ମହାମୃତ୍ୟୁଞ୍ଜୟ ମନ୍ତ୍ର ଯଜ୍ଞ ଅନୁଷ୍ଠାନ କରାଇବା ପାଇଁ ପରାମର୍ଶ ଦେଇଥିଲେ । ଏହାକୁ କାର୍ଯ୍ୟକାରୀ କରାଇ ରାଜା ଗୋବିନ୍ଦଚନ୍ଦ୍ର ମାନସିଂହ ହରିଚନ୍ଦନ ଗତୀଶ୍ୱରଙ୍କୁ ସ୍ଥାପନ କରି ବହୁ ନୈଷ୍ଠିକ ବ୍ରାହ୍ମଣମାନଙ୍କ ଦ୍ୱାରା ଯଜ୍ଞାନୁଷ୍ଠାନ କରାଇଥିଲେ । ଏହି ଯଜ୍ଞ ଅଶୋକାଷ୍ଟମୀ ତିଥିରେ ପୂର୍ଣ୍ଣାହୁତି କରିବା ପାଇଁ ଦେବୀ ଭଗବତୀଙ୍କୁ ଏହି ପୀଠକୁ ନିମନ୍ତ୍ରଣ କରି ଆଣିଥିଲେ । ସେହି ପରମ୍ପରା ଅନୁଯାୟୀ ଏବେ ମଧ୍ୟ ଭଗବତୀ ଅଶୋକାଷ୍ଟମୀ ତିଥିରେ ଏଠାକୁ ଆସନ୍ତି । ଗତୀଶ୍ୱରଙ୍କ ସେବା ପୂଜା ପାଇଁ ସେ ଅନେକ ସେବାୟତ ନିଯୁକ୍ତ କରି ଯେଉଁ ଗ୍ରାମ ଦାନ କରିଥିଲେ ତାହା ଆଜି ଗୋବିନ୍ଦପୁର ନାମରେ ପରିଚିତ ।

ଯଦୁରାଜ ମାନସିଂହଙ୍କ ସୁଯୋଗ୍ୟ ଦାୟାଦ ହିସାବରେ ରାଜା ଗୋବିନ୍ଦ ମାନସିଂହ ବଙ୍କାଡ଼ ଗଡ଼କୁ ଏକ ଉନ୍ନତ ନଗରୀ ରୂପେ ପ୍ରତିଷ୍ଠିତ କରାଇ ଜନମାନସରେ ଅତ୍ୟନ୍ତ ପ୍ରିୟ ହୋଇପାରିଥିଲେ । ପରିଶେଷରେ ୧୬୪୭ ମସିହାରେ ତାଙ୍କର ଦେହାନ୍ତ ହେବାପରେ ତାଙ୍କ ପୁତ୍ର ବଙ୍କାଡ଼ର ରାଜା ହେଲେ ।

## ବଙ୍କାଡ଼ ରାଜବଂଶରେ ଅକାଳ ମୃତ୍ୟୁ

ରାଜା ଗୋବିନ୍ଦଚନ୍ଦ୍ର ମାନସିଂହଙ୍କ ମୃତ୍ୟୁପରେ ଦୀର୍ଘ ୧୦ବର୍ଷ ଧରି ବଙ୍କାଡ଼ ରାଜବଂଶ ଉପରେ ଅକାଳ ଚଡ଼କ ପଡ଼ିଲା ଭଳି ରାଜାମାନଙ୍କ ସ୍ୱଳ୍ପ ସମୟ ଭିତରେ ଦେହାନ୍ତ ହେଲା । ଏହି ସମୟରେ କ୍ରମାନ୍ୱୟରେ ବଙ୍କାଡ଼ ଶାସନ କରିଥିବା ରାଜାମାନଙ୍କ ଭିତରେ ରାଜା ଅଚ୍ୟୁତ ମାନସିଂହ ସବୁଠାରୁ ଦୀର୍ଘ ୫ବର୍ଷ ଶାସନ କରିଥିଲେ ମଧ୍ୟ ଅନ୍ୟମାନେ ମାତ୍ର ବର୍ଷେ, ଦୁଇବର୍ଷ ଶାସନ କରି ଇହଲୀଳା ସମ୍ବରଣ କରିଥିଲେ । ତାଙ୍କ ପରେ ରାଜା ରଘୁନାଥ ମାନସିଂହ ୧୬୫୫ ଠାରୁ ୧୬୫୬ ପର୍ଯ୍ୟନ୍ତ ବଙ୍କାଡ଼ ରାଜା ହୋଇଥିଲେ ।

ରଘୁନାଥ ହରିଚନ୍ଦନ ସ୍ୱଳ୍ପକାଳ ପାଇଁ ରାଜା ହୋଇଥିଲେ ମଧ୍ୟ ଯୁବରାଜ ଥିବାବେଳେ ସେ ସାହିତ୍ୟ ଚର୍ଚ୍ଚାରେ ନିଜକୁ ସର୍ବଦା ନିମଜ୍ଜିତ କରି ରଖୁଥିଲେ । ଅଚ୍ୟୁତ ମାନସିଂହ ରାଜସଭାରେ ପଣ୍ଡିତମାନଙ୍କ ସହ ତାଙ୍କର ବିଶେଷ ଆଲୋଚନା ଓ ତର୍କ ହେଉଥିଲା । ଗୋପସାଗର ସମୀପରେ ରଘୁନାଥ ମାନସିଂହଙ୍କ ଉଦ୍ୟମରେ ପ୍ରତିବର୍ଷ ଏହି ସାହିତ୍ୟ ଓ ତର୍କସଭା ହେଉଥିଲା । ଥରେ ସେ ପୁରୀ ଜଗନ୍ନାଥଙ୍କ ଚନ୍ଦନ ଯାତ୍ରା ଦେଖି ଆସିବାପରେ ଶ୍ରୀ ରଙ୍ଗନାଥଙ୍କ ଚନ୍ଦନ ଯାତ୍ରା ଓ ଏକ ମାଜଣା ପୋଖରୀ କରାଇବା ପାଇଁ ଇଚ୍ଛା କରିଥିଲେ । ଏଥିରେ ଏହି ସଭାର ପଣ୍ଡିତମାନେ ବାଣପୁର ନିକଟସ୍ଥ ଗୋପାଳପୁର ନିକଟରେ ଏହି ପୁଷ୍କରିଣୀ କରାଇବା ଅତ୍ୟନ୍ତ ଶୁଭଙ୍କର ବୋଲି ମତାମତ ଦେଇଥିଲେ । ଏଣୁ ସେ ରାଜା ହେବାପରେ ଗୋପାଳପୁରଠାରେ ଏହି ମାଜଣା ପୋଖରୀ ଖୋଳାଇଥିବାର କିମ୍ବଦନ୍ତୀ କୁହେ । ଏଣୁ ଏବେ ମଧ୍ୟ ଏହି ପୋଖରୀକୁ ଲୋକେ ରଘୁନାଥ ସାଗର କୁହନ୍ତି । ଏହିଠାରେ ସେତେବେଳେ ଶ୍ରୀ ରଙ୍ଗନାଥ ଓ କନକଦୁର୍ଗାଙ୍କ ବିମାନ ଅଣାଯାଇ ତିନିଦିନ ଚନ୍ଦନ ଯାତ୍ରା ଅନୁଷ୍ଠିତ ହେଉଥିବାର ଜଣାଯାଏ । ସେହି ପ୍ରଥା ଅନୁଯାୟୀ ଏବେମଧ୍ୟ ଗୋପାଳପୁରର ମାଜଣା ପୁଷ୍କରିଣୀରେ ପ୍ରତିବର୍ଷ କାଠି ଭଗବତୀ, ଶ୍ରୀଦକ୍ଷେଶ୍ୱର, ଶ୍ରୀ ରଙ୍ଗନାଥଙ୍କସହ ଗୋପାଳପୁର ଅଧିଷ୍ଠିତ ଦେବ ଶ୍ରୀ ଶ୍ରୀ ବାଲୁକେଶ୍ୱର ଦେବ ଓ କପିଳେଶ୍ୱର ଦେବ ତଥା କୋଟବିଦ୍ୟାଧରପୁର ଓ ପାଟପୁର ଶାସନର

ଦେବାଦେବୀଙ୍କର ଚନ୍ଦନ ଯାତ୍ରା ମହାସମାରୋହରେ ଅନୁଷ୍ଠିତ ହୁଏ ।

ରାଜା ରଘୁନାଥ ହରିଚନ୍ଦନ ଜଣେ ସାହିତ୍ୟପ୍ରେମୀ ନରପତି ରୂପେ ସେତେବେଳେ ସମଗ୍ର ଓଡ଼ିଶାରେ ପ୍ରଖ୍ୟାତ ଥିଲେ । ତାଙ୍କ ସଭାର କବି ପଣ୍ଡିତ ବିଷ୍ଣୁଦାସକାବ୍ୟ, ଚଉତିସା, ଛାନ୍ଦ, ଗୈପଦୀ ରଚନା କରିବାରେ ଜଣେ ଧୁରୀଣ କବି ଥିଲେ । ବାଣପୁରପତି ହରିଚନ୍ଦନ ନାମରେ ଭଣିତ ଲୀଳାବତୀ କାବ୍ୟ ଓଡ଼ିଆ ସାହିତ୍ୟର ଏକ ପ୍ରସିଦ୍ଧ କାବ୍ୟ । ତାଙ୍କର ପାଟରାଣୀ ନୟାଗଡ଼ର ରାଜକନ୍ୟା ଶକୁନ୍ତଳା ଦେବୀ ଦକ୍ଷେଶ୍ୱରଙ୍କର ଜଣେ ପରମ ଭକ୍ତଥିଲେ । ବୋଧହୁଏ ଅଚ୍ୟୁତରାଜପୁର ବିଖଣ୍ଡିତ ଆଉ ଦୁଇଖଣ୍ଡ ଗ୍ରାମ ଏହି ରଘୁନାଥ ମାନସିଂହ ଓ ଶକୁନ୍ତଳା ଙ୍କ ନାମରେ ଯଥାକ୍ରମେ ରଘୁନାଥପୁର ଓ ଶକୁନ୍ତଳାପୁର ହୋଇଥିଲା ଯାହା ପରବର୍ତ୍ତୀକାଳରେ ମିଶିଯାଇ ଆଜିର ଅଚ୍ୟୁତରାଜପୁର ଗ୍ରାମ ରୂପେ ପରିଚିତ ।

କପିଳେନ୍ଦ୍ରଙ୍କ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ଜୀବରାଜ ମାନସିଂହ ମାତ୍ର ୨ବର୍ଷ ରାଜୁତି କରି ଇହଧାମ ତ୍ୟାଗ କରିଥିବାରୁ ୧୬୫୦ ଖ୍ରୀଷ୍ଟାବ୍ଦରେ ଅଚ୍ୟୁତମାନସିଂହ ବଙ୍କାଡ଼ର ରାଜଗାଦି ଆରୋହଣ କରିଥିଲେ । ସେ ୧୬୫୦ ରୁ ୧୬୫୫ ମାତ୍ର ୫ବର୍ଷ ରାଜୁତି କରି ମୃତ୍ୟୁବରଣ କରିଥିଲେ । ତାଙ୍କର କୀର୍ତ୍ତି ମଧ୍ୟରେ ଅଚ୍ୟୁତରାଜପୁର ଶାସନ ପ୍ରତିଷ୍ଠା ଏକ ମୂଲ୍ୟବାନ ଘଟଣା । ଏହି ଗ୍ରାମକୁ ତିନି ଭାଗରେ ବିଭକ୍ତ କରାଇ ଗୋଟିଏ ଭାଗକୁ ତାଙ୍କ ବୋହୁ ନାମରେ ଶକୁନ୍ତଳାପୁର ନାମରେ ନାମିତ କରିଥିଲେ । ଅନ୍ୟଏକ ଅଂଶକୁ ପିତା ରଘୁନାଥ ମାନସିଂହଙ୍କ ନାମରେ ରଘୁନାଥପୁର ରଖିଥିଲେ । ପରବର୍ତ୍ତୀ କାଳରେ ସେ ସବୁ ମିଶି ଅଚ୍ୟୁତରାଜପୁର ହୋଇଥିଲା ।

ତାଙ୍କ ସମୟରେ କପିଳେନ୍ଦ୍ର ମାନସିଂହଙ୍କ ରାଜୁତିବେଳେ ଆରମ୍ଭ ହୋଇଥିବା କପିଳେଶ୍ୱର ମନ୍ଦିର ଓ ପାରିକୁଦରେ ଆଉ ଏକ ମନ୍ଦିର କାର୍ଯ୍ୟ ଆରମ୍ଭ କରାଯାଇଥିଲା ଓ ଗମ୍ଭାରୀମୁଣ୍ଡା ସ୍ଥିତ କମଳେଶ୍ୱର ମନ୍ଦିର ତଥା ନଇରିର ହରିହରେଶ୍ୱର ମନ୍ଦିର ତଥା ଚଣ୍ଡେଶ୍ୱର ମନ୍ଦିରର ଭିତ୍ତି ପ୍ରସ୍ତର ପକାଯାଇଥିବାର କେତେକ ମତ ଦିଅନ୍ତି ।

# ଜଗନ୍ନାଥ ମାନସିଂହ ଓ ବାଣପୁରରେ ସୁବର୍ଣ୍ଣ ଯୁଗ (୧୬୫୭ରୁ ୧୭୩୭)

ଜଗନ୍ନାଥ ମାନସିଂହ ହରିଚନ୍ଦନ ଭ୍ରମରବର ରାୟଙ୍କ ଶାସନ ବାଣପୁର ଇତିହାସର ସୁବର୍ଣ୍ଣଯୁଗ ବୋଲି ପ୍ରତିପାଦିତ ହୁଏ । ଏହି ମହାନ୍ ପୁରୁଷ ପ୍ରାୟ ଦୀର୍ଘ ୮୦ବର୍ଷ କାଳ ବଙ୍କାଡ଼ର ରାଜା ହୋଇ ବାଣପୁରର ବହୁ ଉନ୍ନତି କରିବା ସଂଗେ ସଂଗେ ଲୋକମାନଙ୍କୁ ଶାନ୍ତି, ସୁଖ ଓ ଆନନ୍ଦରେ ରଖି ପାରିଥିଲେ ।

ରାଜା ଜଗନ୍ନାଥ ମାନସିଂହଙ୍କ ସମୟରେ ଖୋର୍ଦ୍ଧା ରାଜାଙ୍କ ସହ ଅନେକ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିବାର ଅନେକ ଐତିହାସିକ ମତ ଦେଇଛନ୍ତି ।

ଖୋର୍ଦ୍ଧାର ଗୋପିନାଥଦେବ ଗଜପତି ଥିବାବେଳେ ବଙ୍କାଡ଼ଗଡ଼ ଆସି ବାଣପୁର ରାଜାଙ୍କ ଆତିଥ୍ୟ ନେଇଥିଲେ । ସେତେବେଳେ ଏହି ରାଜ୍ୟରେ ଅନେକ ଗଜାରୋହୀ ସୈନ୍ୟ ବହୁ ବଡ଼ ବଡ଼ ହାତୀପିଠିରେ ଯାଉଥିବାର ଗଜପତି ଲକ୍ଷ୍ୟ କରି ଗୋଟିଏ ହାତୀ ଖୋର୍ଦ୍ଧା ଦରବାରକୁ ପଠାଇବା ପାଇଁ ଅନୁରୋଧ କରିଥିଲେ । ଏହି ଅନୁରୋଧ ରକ୍ଷା କରି ରାଜା ଜଗନ୍ନାଥ ମାନସିଂହ ଗୋଟିଏ ବିରାଟ ବଳଶାଳୀ ଦନ୍ତାହାତୀ ଖୋର୍ଦ୍ଧା ରାଜାଙ୍କୁ ଉପହାର ଦେଇଥିଲେ ମଧ୍ୟ ତାହାକୁ ଚଳାଇବା ପାଇଁ ଖୋର୍ଦ୍ଧା ଦରବାରରେ ସୈନ୍ୟ ମିଳିଲେ ନାହିଁ ।

ଏହି ଅମାନିଆ ହାତୀକୁ ଶାନ୍ତ କରାଇବା ପାଇଁ ବେଣୁ ଭ୍ରମରବର ନାମକ ଏକ ଯୁବକ କ୍ଷମ ହୋଇପାରିଥିଲା । ଏଣୁ ଗଜପତିଙ୍କ ଭାଇ ଗୋପୀନାଥଦେବ ତାହା ମୁଣ୍ଡରେ ଶିରପା ବାନ୍ଧି ତାହାକୁ ବକ୍ସି ରୂପେ ନିଯୁକ୍ତି କରିଥିଲେ । ପରବର୍ତ୍ତୀ କାଳରେ ଏହି ବକ୍ସି ବେଣୁ ଭ୍ରମରବରର ବିଶ୍ୱାସଘାତକତା ଯୋଗୁଁ ଗଜପତି ଗୋପୀନାଥ ଦେବ ନିହତ ହୋଇଥିଲେ ।

ସେହିଭଳି ରାଜା ଜଗନ୍ନାଥ ମାନସିଂହଙ୍କ ଏକ ଦିବ୍ୟ ସୁନ୍ଦରୀ କନ୍ୟା

ଲଳିତା ଦେଈଙ୍କୁ ଗଜପତି ଗୋପୀନାଥ ତାଙ୍କ ଭାଇ କେଶବ ରାୟ ( ପରବର୍ତ୍ତୀ ରାମଚନ୍ଦ୍ରଦେବ ୨ୟ ) ଙ୍କ ପାଇଁ ବୋହୂ କରିବା ପାଇଁ ପୁରୋହିତ ହାତରେ ନଡ଼ିଆ ଦେଇ ବାଣପୁର ରାଜଦରବାରକୁ ପଠାଇଲେ । ଏକଥା ଶୁଣି ରାଜା ଜଗନ୍ନାଥ ମାନସିଂହ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ନଡ଼ିଆଟିକୁ ପଦାଘାତ କରି ପୁରୋହିତଙ୍କୁ ଅପମାନିତ କରାଇ ବିଦାୟ ଦେଲେ । ଏପରିକି ପୁଷ୍ଯ ପୂର୍ଣ୍ଣିମା ତିଥି ଥିଲେ ଏହି ମୂର୍ଖ ପୁରୋହିତଙ୍କୁ ମେରିଆ ବଳି କରିଥାନ୍ତେ ବୋଲି କହି ତିରସ୍କାର କଲେ । ଏକଥା ଶୁଣି ଖୋର୍ଦ୍ଧା ଗଜପତିଙ୍କ ଭାଇ କେଶବ ରାୟ ବାଣପୁର ଆକ୍ରମଣ ପାଇଁ ସୈନ୍ୟ ଚାଳନା କରିବା ଖବର ପାଇ ରାଜା ଜଗନ୍ନାଥ ମାନସିଂହ ବାଣପୁରରୁ ଦୁର୍ଦ୍ଧର୍ଷ କନ୍ଧ ପାଇକ ସେନାଙ୍କୁ ନେଇ ଚଣ୍ଡେଶ୍ୱର ମନ୍ଦିରରେ ଅପେକ୍ଷା କଲେ । ରାତ୍ରି ବହୁତ ହେବାରୁ ରାଜା ଜଗନ୍ନାଥ ମାନସିଂହ ନିଦ୍ରାଭିଭୂତ ହୋଇଥିବା ବେଳେ କେଶବ ରାୟ ଓରଫ ରାମଚନ୍ଦ୍ରଦେବ ଜଗନ୍ନାଥ ମାନସିଂହଙ୍କୁ ହତ୍ୟା ନକରି ଏକ ଚିଠି ଦେଇ ଚାଲିଗଲେ । ପ୍ରଭାତରେ ସେ ଚିଠି ଖୋଲି ଦେଖନ୍ତି ଯେ ଗଜପତିଙ୍କ ଭାଇଙ୍କ ଏଚିଠିରେ ଜଣେ ଅନୂଢା ଝିଅକୁ ବିବାହ ନଦେବା ଅତ୍ୟନ୍ତ ପାପ କାର୍ଯ୍ୟ ହୋଇଥିବାରୁ ତାହାକୁ ବିଚାର କରିବାପାଇଁ ପରାମର୍ଶ ଦିଆଯାଇଥିଲା । ତେବେ ଜଗନ୍ନାଥ ମାନସିଂହ ନିଦ୍ରିତ ଅବସ୍ଥାରେ ଥିବାରୁ ଏକ ନିରୀହ ନିଦ୍ରିତ ଲୋକକୁ ନମାରି ଏହି ଉପଦେଶ ଛାଡ଼ି ଯାଉଛନ୍ତି ବୋଲି କେଶବ ରାୟ ଉକ୍ତ ଚିଟାଉରେ ଲେଖିଥିଲେ ।

ଏଥିରେ ଜଗନ୍ନାଥ ମାନସିଂହଙ୍କର ମନରେ ଘୋର ପରିବର୍ତ୍ତନ ହେଲା ଓ ସେ ନିଜର ସୁକନ୍ୟାଙ୍କୁ କେଶବ ରାୟଙ୍କୁ ବିବାହ ଦେବା ପାଇଁ ରାଜି ହେଲେ । କେଶବ ରାୟ ( ଓରଫ ୨ୟ ରାମଚନ୍ଦ୍ର ଦେବ ) ଲଳିତା ଦେଈଙ୍କୁ ବିବାହ କରିବା ପରେ ବକ୍ସି ଭ୍ରମରବରର କୂଟ ଚକ୍ରାନ୍ତରେ ଗଜପତି ଗୋପୀନାଥ ଦେବ ନିହତ ହେବାରୁ କେଶବ ରାୟ ୨ୟ ରାମଚନ୍ଦ୍ରଦେବ ରୂପେ ଖୋର୍ଦ୍ଧାର ରାଜଗାଦିସିନ ହେଲେ ।

ଏହି ବିବାହରେ ବାଣପୁର ରାଜ୍ୟରୁ ବହୁ ଉପହାର, ହାତୀ, ପଲଙ୍କ, ମଣି, ମୁକ୍ତା ପ୍ରଭୃତି ନେଇ ବହୁ ବାଣପୁରବାସୀ ଖୋର୍ଦ୍ଧା ଯାଇଥିଲେ ।

ଏହି ସମୟରେ ତାଳତୋଳା ନିକଟସ୍ଥ ପ୍ରସିଦ୍ଧ ଦଧିବାମନ ମନ୍ଦିର ତତ୍କାଳୀନ ମୋଗଲ ଫୌଜ୍‌ଦାର୍ ସୟଦ୍ ବେଗର ଅଧିନାୟକତ୍ୱରେ ପଠାଣମାନଙ୍କ ଦ୍ୱାରା ଭଙ୍ଗା ଯାଉଥିବା ଖବର ପାଇ ରାଜା ଜଗନ୍ନାଥ ମାନସିଂହ ବ୍ୟଥିତ ହୋଇପଡ଼ିଥିଲେ । ଏହି ନରାଧମମାନଙ୍କୁ ଉଚିତ ଶିକ୍ଷା ଦେବାପାଇଁ ଗଜପତି ରାମଚନ୍ଦ୍ର ଦେବଙ୍କ ଗୁପ୍ତ ନିର୍ଦ୍ଦେଶରେ ସେ କେତେକ ଧନୁର୍ଦ୍ଧାରୀ କନ୍ଧ ପାଇକଙ୍କୁ ମନ୍ଦିରରକ୍ଷାପାଇଁ ପ୍ରେରଣ କରିଥିଲେ ।

ପାଇକ ମାନଙ୍କ ଅବ୍ୟର୍ଥ ଶରରେ ସୟଦ ବେଗ୍ ତଥା ଫକୀର ଖାଁ ଓ ଅନ୍ୟାନ୍ୟ ବହୁ ପଠାଣ ନିହତ ହୋଇଥିଲେ । ସେତେବେଳେ କଟକର ସୁବେଦାର୍ ତକି ଖାଁ ବାଦ୍‌ଶାହଙ୍କ ଦ୍ୱାରା ନିର୍ଦ୍ଦେଶ ପାଇ ଦିଲ୍ଲୀ ଯାଇଥିବାରୁ ମୋଗଲମାନେ କିଛି କରିପାରିନଥିଲେ ମଧ୍ୟ ତକି ଖାଁ ଫେରି ଆସିବା ପରେ ତାର କ୍ରୁର ଚକ୍ଷୁ ବାଣପୁର ରାଜା ଜଗନ୍ନାଥ ମାନସିଂହ, ରାମଚନ୍ଦ୍ର ଦେବ ତଥା କନ୍ୟା ଲଳିତା ମହାଦେଈଙ୍କ ଉପରେ ସନ୍ଦେହର ପରିଧି ଭିତରେ ରହିଥିଲା । ଏଣୁ ବାଣପୁରରେ ସେତେବେଳେ ମୋଗଲ ଆକ୍ରମଣ ଭୟରେ ସମସ୍ତ ପାଇକ ସେନାମାନଙ୍କୁ ସଜ୍ଜିତ କରାଯାଇଥିଲା । ତକି ଖାଁର ସେନାମାନେ ନୀଳାଦ୍ରିପ୍ରସାଦ ଆସି ଲଳିତା ପାଟମହାଦେଈ ତାଙ୍କ ପୁତ୍ର ଭାଗୀରଥିଙ୍କୁ ଖୋଜିବା ବେଳେ ବଙ୍କାଡ଼ ଗଡ଼ ଶୂନ୍ୟ ପଡ଼ିଥିଲା । ଅଯଥା ରକ୍ତପାତ ଏଡ଼ାଇବା ପାଇଁ ରାଜାଙ୍କ ନିର୍ଦ୍ଦେଶରେ ସମସ୍ତେ ଗ୍ରାମଛାଡ଼ି ଜଙ୍ଗଲକୁ ଚାଲିଯାଇଥିଲେ । ନିଜେ ରାଜା ଭାଲେରୀ ପାହାଡ଼ରେ ଲୁଚି ରହିଥିଲେ ।

ଜଗନ୍ନାଥ ମାନସିଂହ ରାଜଗାଦିସୀନ ହେବାପରେ ପ୍ରଥମେ ରାଜ୍ୟରେ ଶାନ୍ତି ସ୍ଥାପନ କରିବା ପାଇଁ ପାଇକ ଓ ଭାଟମାନଙ୍କୁ ସୁସଜ୍ଜିତ କରି ରଖିଲେ ।

୧୬୬୧ ମସିହାରେ ଖାନଇ ଦୌରାନ୍ କାଳୁପଡ଼ାରେ ୭ଟି ଦୁର୍ଗ ଅଧିକାର କରି ଖୋର୍ଦ୍ଧା ଆକ୍ରମଣ କରିଥିଲା ଓ ଖୋର୍ଦ୍ଧା ରାଜା ମୁକୁନ୍ଦ ଦେବଙ୍କୁ ବନ୍ଦୀ କରି ରଖିଥିଲା । ଏହି ସମ୍ବାଦ ପାଇ ରାଜା ଜଗନ୍ନାଥ ମାନସିଂହ ଅନ୍ୟାନ୍ୟ ଗଡ଼ଜାତ ରାଜାମାନଙ୍କୁ ମିଳାଇ ଖୋର୍ଦ୍ଧାରାଜ୍ୟର ମୁକ୍ତି ପାଇଁ ଯୋଜନା କରୁଥିବା ଜାଣି ସୁବେଦାର୍ ମୁକୁନ୍ଦଦେବଙ୍କୁ ମୁକ୍ତି ଦେଇ ପୁନର୍ବାର ଖୋର୍ଦ୍ଧାର ରାଜ୍ୟ ଫେରାଇ ଦେଇଥିଲେ । ଏଥିପାଇଁ ମୁକୁନ୍ଦ ଦେବ ଜଗନ୍ନାଥ ମାନସିଂହଙ୍କୁ ବହୁତ ସମ୍ମାନ ଦେଉଥିଲେ ।

ଖୋର୍ଦ୍ଧା ରାଜ୍ୟ ପାଇବାପରେ ମୁକୁନ୍ଦ ଦେବ ବରୁଣେଇରୁ ରାଜଧାନୀ ରଥୀପୁରକୁ ପରିବର୍ତ୍ତନ କରିଥିଲେ ଓ ସେତେବେଳେ ବାଣପୁର ରାଜା ଜଗନ୍ନାଥ ମାନସିଂହ ରଥିପୁର ଗଡ଼ ନିର୍ମାଣ ପାଇଁ ବାଣପୁର ଜଙ୍ଗଲରୁ ପ୍ରଚୁର କାଠ ଓ ବାଉଁଶ ପଠାଇଥିବା ଲୋକମୁଖରୁ ଶୁଣାଯାଏ । ଏଥିପାଇଁ ମୁକୁନ୍ଦଦେବ ବାଣପୁରର ବାର୍ଷିକ ଖଜଣା ହାର କମାଇ ଦେଇଥିଲେ ଓ ବାଣପୁର ରାଜ୍ୟର ପାଇକ ସେନାମାନଙ୍କୁ ବିଶେଷ ଗୁରୁତ୍ୱ ଦେଇଥିଲେ ।

୧୬୯୨ ମସିହାରେ ଆଉରଙ୍ଗ ଦେବଙ୍କ ନିର୍ଦ୍ଦେଶରେ ନବାଦ ଏକାମ୍ର ଖାଁ ପୁରୀ ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲେ । ସେତେବେଳେ ଖୋର୍ଦ୍ଧାର ରାଜା ଦିବ୍ୟସିଂହ ଦେବ ଥିଲେ । ଏକାମ୍ର ଖାଁର ଆକ୍ରମଣ ଭୟରେ ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବ ବଙ୍କାଡ଼ର ରାଜା ଜଗନ୍ନାଥ ମାନସିଂହଙ୍କ ସହ ପରାମର୍ଶ କରି ଶ୍ରୀ ଜଗନ୍ନାଥଙ୍କୁ ବାଣପୁରରରେ ଲୁଚାଇ ରଖିଥିଲେ । ଜଗନ୍ନାଥଙ୍କୁ ଏକାମ୍ର ଖାଁ ପାଇପାରିନଥିଲା । ତା ବଦଳରେ ଆଜିର ଚକାଦେବଙ୍କ ପୀଠରେ ଜଗନ୍ନାଥ ମାନସିଂହଙ୍କ ଦ୍ୱାରା ନୂତନଭାବେ ନିର୍ମିତ ହୋଇଥିବା ତିନି କାଷ୍ଠ ପିତୁଳାଙ୍କୁ ନେଇ ଜାଳି ଦେଇଥିବାର ଲୋକ ମୁଖରୁ ଶୁଣାଯାଏ । ପିତୁଳାଙ୍କୁ ନେଇଥିଲେ ମଧ୍ୟ ଚକା ୩ଟି ଛାଡ଼ି ଦେଇଥିବାରୁ ପରବର୍ତ୍ତୀକାଳରେ ଏହି ପୀଠରେ ଚକାଦେବ

ଗାଦିସୀନ ହୋଇଥିବାର ପ୍ରବାଦ ଆଜି ପର୍ଯ୍ୟନ୍ତ ରହିଅଛି । ଆଉରଙ୍ଗଦେବଙ୍କ ମୃତ୍ୟୁପରେ ପଠାଣ ଖେଳ କମିଗଲା । ସେତେବେଳେ ୨ୟ ରାମଚନ୍ଦ୍ର ଦେବ ଖୋର୍ଦ୍ଧାର ରାଜା ହେଲେ ଓ ୧୫ ବର୍ଷ ପରେ ଜଗନ୍ନାଥ ମୂର୍ତ୍ତି ପୁନର୍ବାର ନବକଳେବର କରାଇ ପୁରୀ ମନ୍ଦିରରେ ପ୍ରତିଷ୍ଠା କଲେ । ଏହି ୧୫ବର୍ଷ ବଙ୍କାଡ଼ରେ ଶ୍ରୀ ରଙ୍କନାଥଙ୍କ ସହ ପ୍ରଭୁ ଜଗନ୍ନାଥ ସୁରକ୍ଷିତ ରହି ରାଜା ଜଗନ୍ନାଥ ମାନସିଂହଙ୍କ ଦ୍ୱାରା ସମସ୍ତ ବିଧିବିଧାନ ସହ ପୂଜା ପାଉଥିଲେ । ଏଣୁ ବାଣପୁର ରାଜାଙ୍କୁ ହରିଚନ୍ଦନ ଉପାଧିରେ ଭୂଷିତ କରାଯାଇଥିଲା । ଗଜପତି ଦିବ୍ୟସିଂହ ଦରବାରର କବି ଲୋକନାଥ ବିଦ୍ୟାଧରଙ୍କ ରଚିତ ସର୍ବାଙ୍ଗ ସୁନ୍ଦରୀ କାବ୍ୟରେ ବଙ୍କାଡ଼ ରାଜା ଜଗନ୍ନାଥ ହରିଚନ୍ଦନ କିପରି ଜଗତର ପ୍ରଭୁ ଜଗନ୍ନାଥଙ୍କୁ ସୁରକ୍ଷା ପ୍ରଦାନ କରିଥିଲେ ତାହାର ବିଶଦ ବର୍ଣ୍ଣନା କରାଯାଇଅଛି ।

"ଯେଉଁ ଜଗନ୍ନାଥ ପଦ ଧ୍ୟାନେ ଦେଖିନାହାନ୍ତି ଯୋଗୀଜନେ ସେହି ବାଣପୁର ନୃପ ପରସାଦେ ଦେଖିଲେ ସକଳ ଜନେ ହେ ସୁଜନେ, ଭୋ - ହରିଚନ୍ଦନ ଶାନ୍ତି ଗୋବିନ୍ଦ ବଲ୍ଲଭ ସେବାରେ ମତି ହେ ସୁଜନେ ।" ୧୯୯୮ ମସିହାରେ ଏକ୍ରାମ୍ ଖାଁ ସୁବେଦାର ପଦରୁ ବିଦାୟ ହେବାପରେ ସେହିବର୍ଷ ସୁନିଆଁରେ ପୁନର୍ବାର ଜଗନ୍ନାଥଙ୍କ ପୁରୀ ଶ୍ରୀମନ୍ଦିରକୁ ଅଣାଯାଇଥିଲା । ସେହିଦିନଠାରୁ ବାଣପୁରର ଇଷ୍ଟଦେବୀ ଭଗବତୀଙ୍କ ଭୋଗ ପାଇଁ ଶ୍ରୀମନ୍ଦିରରୁ ଅଭଡ଼ା ପଠାଇବାର ବ୍ୟବସ୍ଥା ହୋଇଥିବାର ଶୁଣାଯାଏ । ଜଗନ୍ନାଥ ମାନସିଂହ ଜଣେ ଅତ୍ୟନ୍ତ ପ୍ରଜାବତ୍ସଳ ଓ ଧାର୍ମିକ ରାଜା ଥିଲେ । ସେ ବାଣପୁର ଅଞ୍ଚଳରେ ଅନେକ ମନ୍ଦିର ପ୍ରତିଷ୍ଠା କରିଥିଲେ । ସେଗୁଡ଼ିକ ମଧ୍ୟରେ ଆଜିର ଭଗବତୀ ମନ୍ଦିର, ଉମାମହେଶ୍ୱର, କଳିଯୁଗେଶ୍ୱର, ନଈରିର ହରିହରେଶ୍ୱର, ଚଣ୍ଡେଶ୍ୱର ଓ କମଳେଶ୍ୱର ମନ୍ଦିର ଅନ୍ୟତମ ।

ଜଗନ୍ନାଥପୁର ନାମରେ ୨ଟି ଶାସନ ଗୋଟିଏ ବାଣପୁରରେ ଓ ଅନ୍ୟଟି ପାରିକୁଦଠାରେ ସେ ପ୍ରତିଷ୍ଠା କରିଥିଲେ ।

ବାଣପୁର ମେଳନ ପଡ଼ିଆରେ ( ଆଜିର ପଲଟଣ ) ଚୈତ୍ରମାସ ଶୁକ୍ଳ ପଞ୍ଚମୀ ଦିନ ( ଜୈନ ଭିକ୍ଷୁମାନଙ୍କ ସ୍ମୃତିରେ ) ସେ ପ୍ରତିଷ୍ଠା କରିଥିବା ସମସ୍ତ ଦେବ ଦେବୀଙ୍କର ଏକ ମେଳଣ କରାଇ ଜନମାନସରେ ଶ୍ରଦ୍ଧା ତଥା ଭକ୍ତିର ମୂର୍ତ୍ତି ରୂପେ ନିଜକୁ ପ୍ରତିଷ୍ଠା କରିଥିଲେ । ଏକ ପ୍ରବାଦ ଅନୁଯାୟୀ ଦିନେ ରାଜା ଜଗନ୍ନାଥ ମାନସିଂହଙ୍କୁ ବ୍ରାହ୍ମଣ ପଣ୍ଡିତମାନେ ଅତୀତରେ ପ୍ରବ୍ରଜ୍ୟା ବ୍ରତ ପାଇଁ କିପରି ହଜାର ହଜାର ଜୈନ ଧର୍ମୀ ଭକ୍ତ ବାଣପୁରର ମେଳନ ପଡ଼ିଆକୁ ଆସି ଚୈତ୍ରମାସ କୃଷ୍ଣ ପଞ୍ଚମୀ ଦିନ ମିଳିତ ହେଉଥିଲେ, ସେ ବିଷୟ ବର୍ଣ୍ଣନା କରିବା ସଂଗେ ସଂଗେ ଏଇ ପ୍ରସିଦ୍ଧ ସ୍ମୃତିର ପୁନରୁଦ୍ଧାର କରାଇବା ପାଇଁ ପରାମର୍ଶ ଦେଇଥିଲେ । ତାହାକୁ ଆଧାର କରି ପଞ୍ଚଦୋଳ ଯାତ୍ରା ରାଜା ଜଗନ୍ନାଥ ମାନସିଂହଙ୍କର ଏକ ଅନବଦ୍ୟ କୃତି ।

# ବାଣପୁର ନାତି କୁମାର ଭାଗୀରଥି

୧୭୩୧ରେ ମହମ୍ମଦ ତକି ଖାଁ ଶିଶୁପାଳ ଗଡ଼ ଧଉଳି ଓ ଖୋର୍ଦ୍ଧା ରଥୀପୁର ଦଖଲ କରିନେବା ପରେ ୧୭୩୨ରେ ଖୋର୍ଦ୍ଧା ରାଜକୁମାରମାନଙ୍କ ଭିତରେ ବିଦ୍ରୋହ ହେଲା । ସେତେବେଳେ କୁମାର ଭାଗୀରଥି ଆଠଗଡ଼ ଓ ବଙ୍କାଡ଼ ରାଜାଙ୍କ ସାହାଯ୍ୟ ନେଇ ପୁରୀ ଓ ଖୋର୍ଦ୍ଧାରୁ ମୋଗଲ ସୈନ୍ୟମାନଙ୍କୁ କିଛି ଦିନପାଇଁ ବିତାଡ଼ିତ କରି ପୁରୀ ଆସି ଜଗନ୍ନାଥଙ୍କ ଠାରୁ ଆନୀତ ଶାଢୀ ଶିରରେ ଧାରଣ କରିଥିଲେ । ଭାଗୀରଥିଙ୍କ ଏହି ଯୁଦ୍ଧଯାତ୍ରାର ମୁଖ୍ୟ ପୁରୋଧା ବୃଦ୍ଧ ରାଜା ଜଗନ୍ନାଥ ମାନସିଂହ ହରିଚନ୍ଦନ ଥିବାର ଅନେକ ଐତିହାସିକ କୁହନ୍ତି । ମହମ୍ମଦ ତକି ଖାଁ ଏ ସମ୍ବାଦ ପାଇବାପରେ ସାଥିରେ ରାମଚନ୍ଦ୍ର ଦେବଙ୍କୁ ଧରି କୁମାର ଭାଗୀରଥିଙ୍କ ସହ ଯୁଦ୍ଧ କରି ପରାସ୍ତ କରିଥିଲେ । ଫଳରେ କୁମାର ଭାଗିରଥି ଦଣପଲ୍ଲୀ ପଳାଇ ଯାଇ ଆଶ୍ରୟ ନେଇଥିବାର କୁହାଯାଏ । ଅନ୍ୟ କେତେକଙ୍କ ମତରେ କୁମାର ସେତେବେଳେ ବଙ୍କାଡ଼ ଆସି ମା' ଲଳିତା ଦେବୀଙ୍କ ସହ ଗୁପ୍ତଭାବରେ ବିରଜାଇ ବିଳାସରେ ରହୁଥିଲେ ।

ପୁନର୍ବାର ୧୭୩୩ ମସିହାରେ ମହମ୍ମଦ ତକି ଖାଁର ଭୟରେ ଗଜପତି ରାମଚନ୍ଦ୍ର ଦେବଙ୍କ ଗୁପ୍ତ ନିର୍ଦ୍ଦେଶରେ ପୁରୀରୁ ଶ୍ରୀ ଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ବଡ଼ ଓ ସାନ ପରିଛାଙ୍କ ତତ୍ତ୍ୱାବଧାନରେ ଚାପରେ ବସାଇ ଆଣି ବାଣପୁର ନଇରି ଗ୍ରାମରେ ହରିହରେଶ୍ୱର ମନ୍ଦିରଠାରେ ଅବସ୍ଥାପିତ କରାଯାଇଥିଲା । ରାଜା ଜଗନ୍ନାଥ ହରିଚନ୍ଦନଙ୍କ ଉପସ୍ଥିତ ବୁଦ୍ଧି ଶ୍ରୀ ଜଗନ୍ନାଥଙ୍କୁ ସୁରକ୍ଷା ଦେବାରେ ବିଶେଷ ସହାୟକ ହେଲା । କେତେକ କୁହନ୍ତି, ହରିହରେଶ୍ୱର ମନ୍ଦିରଠାରେ କିଛିଦିନ ରହିବାପରେ ଶ୍ରୀ ଜଗନ୍ନାଥଙ୍କୁ ଖଲ୍ଲିକୋଟର ଚିକିଲି ନିଆଯାଇ ସୁରକ୍ଷିତ ରଖାଗଲା ।

ଐତିହାସିକ କେଦାରନାଥ ମହାପାତ୍ରଙ୍କ ଓଡ଼ିଶା ଇତିହାସ ଅନୁଯାୟୀ ୧୬୩୩ ମସିହାରେ ଗଜପତି ରାମଚନ୍ଦ୍ର ଦେବ ବୋଲଗଡ଼ଠାରେ ଲୁଚି ରହିବାରୁ ତକି ଖାଁ ପୁନର୍ବାର କୁମାର ଭାଗୀରଥିଙ୍କୁ ଦଣପଲ୍ଲୀରୁ ଆଣି ଖୋର୍ଦ୍ଧାରେ ଗାଦିସୀନ କରାଇ କଟକ ବାରବାଟି ଫେରିଗଲେ । ଭାଗୀରଥି ରାଜା ହେବାପରେ ସେହିବର୍ଷ ଆଷାଢ ମାସରେ ଦାରୁ ସଂଗ୍ରହ କରି ଜଗନ୍ନାଥଙ୍କ ନବକଳେବର କରିବା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ଠିକ୍ ଏହିସମୟରେ ହଠାତ୍ ରାମଚନ୍ଦ୍ର ଦେବ ବୋଲଗଡ଼ରୁ ଆସି ଖୋର୍ଦ୍ଧା ଅଧିକାର କରିନେଲେ ଓ ଭାଗୀରଥି କୁମାର ମୋଗଲ ସେନା ସହିତ କଟକ ବାରବାଟିକୁ ଚାଲିଗଲେ । ରାମଚନ୍ଦ୍ର ଦେବ ଚିକିଲିରୁ ଜଗନ୍ନାଥଙ୍କୁ ଫେରାଇ ଆଣି ୧୬୩୩ ମସିହାରେ ଶ୍ରୀ ଗୁଣ୍ଡିଚା ଯାତ୍ରା ପୂର୍ବରୁ ଶ୍ରୀମନ୍ଦିରରେ ପୁନଃ ପ୍ରତିଷ୍ଠା କଲେ । ଏହିଠାରେ ଜଗନ୍ନାଥ ମାନସିଂହ ନାତି ଭାଗୀରଥି କୁମାରଙ୍କୁ ସାହାଯ୍ୟ କରିନଥିଲେ । କାରଣ ପିତା ପୁତ୍ରର ମନୋମାଳିନ୍ୟରେ ସେ ସାମିଲ୍ ହେବାକୁ ଚାହୁଁନଥିଲେ ।

ଜଗନ୍ନାଥଙ୍କ ପାଇଁ ରାମଚନ୍ଦ୍ରଦେବ ଧର୍ମଚ୍ୟୁତ ହୋଇ ହାଫିଜ୍ କାଦର ହୋଇଥିଲେ । ଜଗନ୍ନାଥ ମନ୍ଦିର ତାଙ୍କ ପାଇଁ ମନା ହୋଇଗଲା । ଏହି ଧର୍ମଦ୍ରୋହୀ ଖୋର୍ଦ୍ଧା ରାଜାଙ୍କ ପାଟ ମହାଦେଈ ବାଣପୁର ରାଜାଙ୍କ ଝିଅ ହୋଇଥିବାରୁ ଘୋର ଅପମାନ ସହିନପାରି ନିଜ ପୁଅ ଭାଗୀରଥି ସହ ସେ ବାଣପୁରସ୍ଥ ପିତ୍ରାଳୟକୁ ଚାଲିଆସିଥିଲେ । ଏହା ଥିଲା ରାଜା ଜଗନ୍ନାଥ ମାନସିଂହଙ୍କ ପାଇଁ ଏକ ବିଷାଦଭରା ସମୟ । ଏହି ସମୟରେ ସେ ମଧ୍ୟ ରାମଚନ୍ଦ୍ର ଦେବଙ୍କ ସହ ସମସ୍ତ ସମ୍ପର୍କ ଛିନ୍ନ କରି ନେଇଥିବାର ମନେ ହୁଏ ।

କେତେକ ବ୍ରାହ୍ମଣ ପୁରୋହିତଙ୍କ ପରାମର୍ଶରେ ଲଳିତା ପାଟମହାଦେଈ ଓ ତାଙ୍କ ପୁତ୍ର ଭାଗୀରଥିଙ୍କ ମଙ୍ଗଳ ପାଇଁ ଏକ ସୋଲଗୀର ପାଦଦେଶରେ ଏକ ସିଦ୍ଧ ଯଜ୍ଞ କରାଇଥିବାର ଲୋକକଥାରେ ପ୍ରତିପାଦିତ । ଏହି ଯଜ୍ଞ ୨୧ ଦିନ

ଧରି ହେବାପରେ ପଣା ସଂକ୍ରାନ୍ତି ଦିନ ପୂର୍ଣ୍ଣାହୁତି ହୋଇଥିଲା । ସେଦିନ ବାଣପୁରର ଇଷ୍ଟଦେବୀ ଭଗବତୀଙ୍କୁ ଅଣାଇ ଏହି ଯଜ୍ଞର ପୂର୍ଣ୍ଣାହୁତି କରାଇଥିଲେ । ଯେଉଁଠାରେ ଯଜ୍ଞ ହୋଇଥିଲା ସେହିଠାରେ ଆଜି ସିଦ୍ଧାମ୍ବରୀ ଦେବୀ ପ୍ରତିଷ୍ଠିତା ଓ ପ୍ରତିବର୍ଷ ପଣା ସଂକ୍ରାନ୍ତିରେ ଏବେ ମଧ୍ୟ ଭଗବତୀ ନିମନ୍ତ୍ରିତ ହୋଇ ଏଠାକୁ ଆସୁଥିବାର ପରମ୍ପରା ରହିଅଛି । ସେତେବେଳେ ଜଗନ୍ନାଥ ମାନସିଂହଙ୍କ ପରିଣତ ବୟସ ହୋଇଥିଲା । ସେ ସୋଲଗୀ ଉପରେ ଏକ ଆଶ୍ରମ ନିର୍ମାଣ କରାଇ ଆଶ୍ରମ ଜୀବନ ଅତିବାହିତ କରୁଥିବାର କେତେକ କୁହନ୍ତି । ସେଥିପାଇଁ ସେଠାରେ ଏକ ସୁନ୍ଦର ମନୋରମ ଜାଗାରେ ଏକ ପୋଖରୀ ଖୋଳାଇ ଆଶ୍ରମ ତିଆରିକରି ଶେଷ ଜୀବନ ବିତାଇଥିବାର ଆଜି ମଧ୍ୟ ଲୋକମୁଖରେ ପ୍ରକାଶିତ । ବୋଧହୁଏ ସେହି ସ୍ଥାନ ଆଜିର ଶାମୁକା ପୋଖରୀ ଅଞ୍ଚଳ ହୋଇଥିବ ବୋଲି ମନେହୁଏ । ରାଜାଙ୍କ ସୁରକ୍ଷା ପାଇଁ ଭାଟମାନେ ନିକଟରେ ରହୁଥିବାରୁ ବୋଧହୁଏ ଏହା ଭାଟପଡ଼ା ଗ୍ରାମ ହୋଇଥାଇପାରେ ଓ ଏହି ଭାଟମାନଙ୍କ ଦଳପତିଙ୍କୁ ଦଳବେହେରା କୁହାଯାଇଥାଇପାରେ । ଏହି ଦଳବେହେରାଙ୍କୁ ରାଜା ବହୁ ନିଷ୍କର ଜମିବାଡ଼ି ଖଞ୍ଜିଦେଇଥିବା ମଧ୍ୟ ପ୍ରଚଳିତ । ପରବର୍ତ୍ତୀକାଳରେ ବାଣପୁରରୁ ରାଜବଂଶର ଲୋପପରେ ଏହି ଭାଟପଡ଼ା ଦଳବେହେରା ଏହି ଅଞ୍ଚଳର ଅନେକ ଦେବାଦେବୀଙ୍କ ମନ୍ଦିର ପରିଚାଳନାରେ ପ୍ରାକ୍ତନ ରାଜାଙ୍କ ଭଳି ମୁଖ୍ୟ ଅଂଶ ନିଭାଉଥିବା ଆଜି ମଧ୍ୟ ପ୍ରଚଳିତ । ରାଜା ଜଗନ୍ନାଥ ମାନସିଂହ ଶେଷ ଜୀବନ ଏହି ସୋଲଗୀ ପାହାଡ଼ରେ ଶାନ୍ତସରଳ ପରିବେଶରେ କଟାଇବା ପାଇଁ ଏହି ଶାମୁକା ପୋଖରୀ କୂଳରେ ଏକ କ୍ଷୁଦ୍ର ଗଡ଼ ନିର୍ମାଣ କରିଥିଲେ । ଏହି ଗଡ଼ର ସୁରକ୍ଷାପାଇଁ ଯେଉଁ ଭାଟମାନେ ଦାୟିତ୍ୱ ନେଇଥିଲେ। ସେମାନଙ୍କ ଥଇଥାନ ପାଇଁ ରାଜା ଜଗନ୍ନାଥ ମାନସିଂହ ଏହି ଭାଟପଡ଼ା ନିକଟରେ ମାନସିଂହପୁର ନାମରେ ଏକ ଗ୍ରାମ ଦାନ କରିଥିଲେ ।

ସେହିଭଳି ପୁରୀର ଶ୍ରୀଜଗନ୍ନାଥଙ୍କୁ ଏକାମ୍ର ଖାଁ ଭୟରେ ବଙ୍କାଡ଼ଗଡ଼ରେ ଲୁଚାଇ ରଖି ଯେଉଁ ବ୍ରାହ୍ମଣ ପୁରୋହିତମାନଙ୍କ ଦ୍ୱାରା ତାଙ୍କର ସମସ୍ତ ପୂଜା ବିଧି କରାଇଥିଲେ ସେମାନଙ୍କ ପାଇଁ ହରିଚନ୍ଦନପୁର ନାମରେ ଏକ ଗ୍ରାମ ନିର୍ମାଣ କରାଇ ନିଷ୍କର ଜମିବାଡ଼ିର ବ୍ୟବସ୍ଥା କରାଇଥିଲେ । ଏହି ମାନସିଂହପୁର ଓ ହରିଚନ୍ଦନପୁର ଏବେ ଗମ୍ଭାରିମୁଣ୍ଡା ଅଞ୍ଚଳରେ ଅବସ୍ଥିତ ଥିବାର ସର୍ବଜନବିଦିତ। ଜଗନ୍ନାଥ ମାନସିଂହ ହରିଚନ୍ଦନଙ୍କ ଦୀର୍ଘ ୮୦ବର୍ଷର ଶାସନ ଇତିହାସରେ ଏକ ସୁବର୍ଣ୍ଣଯୁଗ-ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ବଙ୍କାଡ଼ ଗଡ଼ର ମର୍ଯ୍ୟାଦାକୁ ସମଗ୍ର ଦେଶରେ ପ୍ରତ୍ୟେକ କ୍ଷେତ୍ରରେ ବୃଦ୍ଧିକରାଇ ସେ ବାଣପୁର ରାଜା, ରାଜୁଡ଼ା ଶାସନର ମଉଡ଼ମଣି ଭାବରେ ପ୍ରଶଂସିତ । ବାଣପୁରକୁ ଆର୍ଥିକ, ସାମାଜିକ, ତଥା ସାଂସ୍କୃତିକ କ୍ଷେତ୍ରରେ ଶୀର୍ଷ ସ୍ଥାନକୁ ନେବାପାଇଁ ତାଙ୍କର ସଂଗ୍ରାମରତ ଜୀବନ ବାସ୍ତବିକ ଅତୁଳନୀୟ । ଶୁଣାଯାଏ ଯେ ନିଜ ପୁତ୍ର ଶ୍ରୀନିବାସ ମାନସିଂହଙ୍କ କୁଶାସନରେ ମିୟମ୍ରାଣ ହୋଇ ସେ ଅତ୍ୟନ୍ତ ନିରାଶା ଓ ହତାଶା ଭିତରେ ଇହଲୀଳା ସମ୍ବରଣ କରିଥିଲେ ।

# ଶ୍ରୀନିବାସ ହରିଚନ୍ଦନ
## ( ୧୭୩୭ ରୁ ୧୭୬୮ )

ରାଜା ଜଗନ୍ନାଥ ମାନସିଂହ ସୁଦୀର୍ଘ ୮୦ବର୍ଷ ଶାସନ କଲାପରେ ତାଙ୍କର ପୁତୁରା ଶ୍ରୀନିବାସ ମାନସିଂହଙ୍କୁ ବଙ୍କାଡ଼ ରାଜଗାଦିରେ ବସାଇ ୧୭୩୭ ମସିହାରେ ସୋଲରୀ ପାହାଡ଼ରେ ଆଶ୍ରମ ସ୍ଥାପନ କରି ବାନପ୍ରସ୍ଥ କରିଥିବାର କୁହାଯାଏ ।

ଶ୍ରୀନିବାସ ମାନସିଂହ ବଙ୍କାଡ଼ର ରାଜଗାଦି ଆରୋହଣ କରିବା ସମୟରେ ତତ୍କାଳୀନ ଖୋର୍ଦ୍ଧା ଗଜପତି ବୀରକିଶୋର ଦେବ ଘୁମୁସରଠାରେ ଗୁପ୍ତନିବାସରେ ଥିଲେ । କାରଣ ତତ୍କାଳୀନ ମୁସଲମାନ ସୁବେଦାର ମୀର୍ ହବିବ୍ ପଟିଆର ରାଜା ପଦ୍ମନାଭଦେବଙ୍କୁ ଖୋର୍ଦ୍ଧାର ଗଜପତି ରୂପେ ଅବସ୍ଥାପିତ କରାଇଥିଲେ । ଏଣୁ ନିର୍ବାସିତ ଗଜପତି ବୀର କିଶୋରଦେବ ଘୁମୁରସର ଭଞ୍ଜ ରାଜାଙ୍କ ସୈନ୍ୟ ସହାୟତାରେ ଖୋର୍ଦ୍ଧାରାଜ୍ୟକୁ ଉଦ୍ଧାର କରିବାପାଇଁ ବଙ୍କାଡ଼ ରାଜା ଶ୍ରୀନିବାସ ହରିଚନ୍ଦନଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ଶ୍ରୀନିବାସ ହରିଚନ୍ଦନ ତାଙ୍କ ଅନୁରୋଧ ରକ୍ଷା କରିନଥିଲେ । ଫଳରେ ବୀରକିଶୋର ଦେବ ଖୋର୍ଦ୍ଧାର ଗଜପତି ହେବାପରେ ବଙ୍କାଡ଼ ( ବାଣପୁର ) ଉପରେ ଦାଉସାଧିଥିବାର ଅନେକ ଐତିହାସିକଙ୍କ ମତ ।

ଶ୍ରୀନିବାସ ମାନସିଂହ ରାଜତ୍ୱକାଳରେ ବାଣପୁର ଇତିହାସରେ ଏକ କଳଙ୍କିତ ଯୁଗ କୁହାଯାଏ । କାରଣ ସେ ଅତ୍ୟନ୍ତ କ୍ରୁର, ନିଷ୍ଠୁର, ଓ ଅନ୍ୟାୟୀ ଶାସକ ଥିବାର କଥିତ ଥିଲା । ନିରୀହ ପ୍ରଜାମାନଙ୍କୁ ଉତ୍ପୀଡ଼ିତ କରାଇ ଖଜଣା ଅସୁଲ କରିବାରେ ସେ ଅତ୍ୟନ୍ତ ଧୁରନ୍ଧର ଥିଲେ ।

ସେହିଭଳି ୧୭୬୦ ମସିହାରେ ପାରଳାର ଗଜପତି ଜଗନ୍ନାଥ ନାରାୟଣଦେବ ବାଣପୁର ବାଟଦେଇ ସୈନ୍ୟ ସାମନ୍ତ ସହ ଯାଇ ଖୋର୍ଦ୍ଧା

ଆକ୍ରମଣ କରିଥିଲେ । ପାରଳା ରାଜାଙ୍କ ଏହି ସମର ଅଭିଯାନ ବେଳେ ଶ୍ରୀନିବାସ ମାନସିଂହ କୁଆଡ଼େ ପାରଳା ରାଜାଙ୍କୁ ବାଣପୁରଠାରେ ଆତିଥ୍ୟ ପ୍ରଦାନ କରିଥିଲେ । ଫଳରେ ଖୋର୍ଦ୍ଧା ଗଜପତି ବୀରକିଶୋର ଦେବ ଏହି ଖବର ଶୁଣି ଶ୍ରୀନିବାସ ମାନସିଂହଙ୍କ ଠାରେ ଅତ୍ୟନ୍ତ କ୍ଷୁବ୍ଧ ଥିଲେ । ପାରଳା ରାଜାଙ୍କ ଏହି ଖୋର୍ଦ୍ଧା ଆକ୍ରମଣକୁ ତତ୍କାଳୀନ ମରହଟ୍ଟା ସେନାପତି ରଘୁଜୀ ଭୋନ୍‌ସଲାଙ୍କ ସାହାଯ୍ୟରେ ଗଜପତି ବୀରକିଶୋର ଦେବ ପ୍ରତିହତ କରିଥିଲେ ମଧ୍ୟ ପ୍ରତିବଦଳରେ ମରହଟ୍ଟାମାନଙ୍କୁ ଖୋର୍ଦ୍ଧାରାଜ୍ୟର କେତେକ ଜମିଦାରୀ ବନ୍ଧକ ଦେବାପାଇଁ ବାଧ୍ୟ ହୋଇଥିଲେ । ଏହି ବନ୍ଧକ ଭିତରେ ବାଣପୁର (ବଙ୍କାଡ଼ ) ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । ଫଳରେ ଶ୍ରୀନିବାସ ମାନସିଂହଙ୍କ ରାଜ୍ୟ ବାଣପୁରରେ ମରହଟ୍ଟା ମାନଙ୍କ ଉତ୍ପୀଡ଼ନ ଚରମ ସୀମା ସ୍ପର୍ଶ କରିଥିଲା । ମଠ, ମନ୍ଦିର ପ୍ରଭୃତି ତାଙ୍କରି ସମୟରେ ନିମ୍ନଗାମୀ ହୋଇଥିଲା । ଏହି ସୁଯୋଗରେ କେତେକ କୁଚକ୍ରୀ ଲୋକ ଶ୍ରୀନିବାସଙ୍କୁ ମିଥ୍ୟା ଓ ତୋଷାମତକାରୀ କଥା କହି ବହୁ ଫାଇଦାନେଇଥିବାର ଅନୁମିତ ହୁଏ । ଶାନ୍ତି ଓ ସ୍ଥିରତା ଏହି ରାଜାଙ୍କ ସମୟରେ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କର ଭଲ କାମ ଭିତରେ ସେ ଶ୍ରୀନିବାସପୁର ଶାସନ ପ୍ରତିଷ୍ଠା କରିଥିବାର ପ୍ରମାଣିତ ।

ଏହାଙ୍କ ସମୟରେ ପଞ୍ଚୁଦୋଳ ଯାତ୍ରା ପାଇଁ ଆଠ ଶାସନ ଓ ନଅଦେଉଳର ଦେବ ଦେବୀମାନଙ୍କୁ ବିଶିଷ୍ଟ ଦେବଦେବୀ ରୂପେ ପରିଗଣିତ କରାଯାଉଥିଲା । ଆଠଶାସନର ମୁଖ୍ୟ ହିସାବରେ ପ୍ରଭୁ ଶ୍ରୀ ରଙ୍ଗନାଥ ଓ ନଅଦେଉଳର ମୁଖ୍ୟ ଦେବତା ହିସାବରେ ଉମାମହେଶ୍ୱରଙ୍କୁ ନିର୍ବାଚିତ କରାଯାଇଥିଲା । ଏହି ଦୁଇ ଦେବତା ସର୍ବଦା ବାଣପୁର ଅଧିଷ୍ଠାତ୍ରୀ ଦେବୀ ଭଗବତୀଙ୍କ ସହ ସାମିଲ୍ ହୋଇଯିବାର ବିଧି ଏହିଠାରୁ ପ୍ରବର୍ତ୍ତିତ ହୋଇଥିଲା । ଆଠ ଶାସନ ଭିତରେ ଅଚ୍ୟୁତରାଜପୁର, ଶ୍ରୀନିବାସପୁର, ଗୋପାଳପୁର,

ଭୀମପୁର, ଜଗନ୍ନାଥପୁର ( ପୁଞ୍ଜିଆମା ), ଗଙ୍ଗାଧରପୁର, ଛୋଟରାୟପୁର ଓ ଜୀବନଦେଇପୁର ନିର୍ମିତ ହୋଇଥିଲା । ଏହି ଶାସନ ଗୁଡ଼ିକର ଦେବଦେବୀମାନେ ପ୍ରଭୁ ଶ୍ରୀ ରଙ୍ଗନାଥଙ୍କ ସାଥିରେ ସାମିଲ ହୋଇ ଯାଉଥିବାର ପ୍ରବାଦ ଥିଲା । ନଅ ଦେଉଳର ମୂଖ୍ୟ ଦେବତା ଥିଲେ ନଇରୀର ହରିହର ଦେବ କାଳକ୍ରମେ ଏଠାରେ ଦଶଦୋଳ ମେଳନ ହେବାରୁ ଏହି ଠାକୁରମାନେ ପଞ୍ଚଦୋଳ ଯାତ୍ରାକୁ ଆସିଲେ ନାହିଁ । ଏଣୁ ହରିହର ଦେବଙ୍କ ସ୍ଥାନରେ ନଅଦେଉଳର ମୁଖ୍ୟ ଦେବତା ହେଲେ ଉମାମହେଶ୍ୱର ।

ଶ୍ରୀନିବାସ ମାନସିଂହ ୧୭୬୮ରେ ମୃତ୍ୟୁବରଣ କଲେ । ଏଣୁ ତାଙ୍କର ସୁପୁତ୍ର ଯୁବରାଜ ମଧୁସୂଦନ ମାନସିଂହ ବଙ୍କାଡ଼ର ରାଜା ହେଲେ ।

# ମଧୁସୂଦନ ମାନସିଂହ

ଏହି ରାଜା ମାତ୍ର ଅଳ୍ପକାଳ ପାଇଁ ରାଜଗାଦିଆସୀନ ହୋଇଥିଲେ । ସେ ଶ୍ରୀନିବାସଙ୍କ ଭଳି ନଷ୍ଟ ଚରିତ୍ରର ଶାସକ ନଥିଲେ, ବରଂ ତାଙ୍କ ସମୟରେ ଗଢି ଉଠିଥିବା ପ୍ରଜାଆନ୍ଦୋଳନ ତାଙ୍କର ଆମାୟିକ ବ୍ୟବହାର ଓ ଲୋକ ସମ୍ପର୍କ ଯୋଗୁଁ କିଛି ପରିମାଣରେ କମିଥିଲା । ଏହାଙ୍କ ସମୟରେ ସେପରି କିଛି ବିଶିଷ୍ଟ ଘଟଣା ଘଟିନଥିବାର ଅନୁମିତ ହୁଏ । କେବଳ ପ୍ରଜା ଆନ୍ଦୋଳନ ଓ ଖୋର୍ଦ୍ଧା ରାଜା ଗଜପତିଙ୍କ ଘନ ଘନ ଆକ୍ରମଣର ସମ୍ମୁଖୀନ ହୋଇ ମାତ୍ର ୩ବର୍ଷ ରାଜୁତି କରି ସେ ମୃତ୍ୟୁବରଣ କରିବାରୁ ତାଙ୍କ ପରେ ତାଙ୍କ ଭାଇ ଦୟାନିଧି ମାନସିଂହ ବଙ୍କାଡ଼ର ରାଜଗାଦୀ ଆରୋହଣ କଲେ । ଏହାଙ୍କ ସମୟରେ ଅନେକ ଗ୍ରାମମାନଙ୍କରେ ଖଳ ପ୍ରକୃତିର ଲୋକମାନେ ପ୍ରଜାମାନଙ୍କୁ ମତାଇ ଆନ୍ଦୋଳନ କରିବା ସଂଗେ ସଂଗେ ଖଜଣା ଦେବାମଧ୍ୟ ବନ୍ଦ କରିଥିବାର କେତେକ କୁହନ୍ତି । ଅନେକ ଛୋଟ ଛୋଟ ଜମିଦାର ପ୍ରଜାମାନଙ୍କୁ ହାତକରି ବଙ୍କାଡ଼ରେ ଅରାଜକତା ସୃଷ୍ଟି କରିବା ସଂଗେ ସଂଗେ ଖୋର୍ଦ୍ଧା ରାଜାଙ୍କ ପାତ୍ର, ମନ୍ତ୍ରୀ ତଥା ରାଜକର୍ମଚାରୀଙ୍କ ମାଧ୍ୟମରେ ଏହି ଅଞ୍ଚଳରେ ଅରାଜକତା ବୃଦ୍ଧି ପାଇଥିଲା । ଏପରିକି ଏହାଙ୍କ ସମୟରେ ଅନେକ ପ୍ରାକୃତିକ ବ୍ୟୁତ୍ପାତ ହୋଇ ବଙ୍କାଡ଼ ଗଡ଼ ଶ୍ରୀହୀନ ହୋଇପଡ଼ିଲା । ଏହିଭଳି ପ୍ରଜାଆନ୍ଦୋଳନରେ କ୍ଷତବିକ୍ଷତ ହୋଇ ରାଜା ଦୟାନିଧି ମାନସିଂହ ୧୭୭୬ ମସିହାରେ ମାତ୍ର ୫ବର୍ଷ ରାଜୁତି କରି ମୃତ୍ୟୁବରଣ କଲେ ।

## ବଙ୍କାଡ଼ର ପତନ

ଦୟାନିଧି ମାନସିଂହଙ୍କ ଦୁଃଖଦ ମୃତ୍ୟୁପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ର ମାନସିଂହ ବଙ୍କାଡ଼ର ରାଜା ହେଲେ । କିନ୍ତୁ ସେ ରାଜା ହେବା ସମୟରେ ବଙ୍କାଡ଼ ଅତ୍ୟନ୍ତ ଶ୍ରୀହୀନ ହୋଇପଡ଼ିଥିଲା । ଆର୍ଥିକ ଦୁରାବସ୍ଥା ହେତୁ ଉଆସକୁ ମରାମତି କରାଯାଇପାରିଲାନାହିଁ । ଖୋର୍ଦ୍ଧା ରାଜାଙ୍କର ବାର୍ଷିକ ଖଜଣା ଦେଇନପାରିବାରୁ, ଖୋର୍ଦ୍ଧା ରାଜା ବୀରକିଶୋର ଦେବ ତଥା ମରାହଟ୍ଟାମାନଙ୍କ ବାରମ୍ବାର ଆକ୍ରମଣରେ ରାମଚନ୍ଦ୍ର ମାନସିଂହ ଅତିଷ୍ଠ ହୋଇପଡ଼ିଲେ ଓ ଶେଷରେ ୧୭୬୯ ମସିହାରେ ମୃତ୍ୟୁବରଣ କଲେ ।

ଏହାଙ୍କ ପରେ ବଙ୍କାଡ଼ର ଶେଷ ରାଜା ହରିସେବକ ମାନସିଂହ ୧୭୬୯ରେ ବଙ୍କାଡର ରାଜା ହେବାପରେ ଖୋର୍ଦ୍ଧା ରାଜା ଓ ମରହଟ୍ଟାମାନଙ୍କ ସହିତ ଆଉ ଯୁଦ୍ଧ କରିନପାରି ବଙ୍କାଡ଼ ସବୁଦିନପାଇଁ ତ୍ୟାଗ କରି ନିଜ ଅଧୀନରେ ଥିବା ଚିଲିକାର ଗୁରୁବାଇକୁ ଚାଲିଯାଇଥିଲେ ।

ଏଣୁ ୧୭୬୯ ପରେ ବଙ୍କାଡ଼ର ପତନ ଘଟିଲା ଓ ଏହି ରାଜ୍ୟ ଖୋର୍ଦ୍ଧା ରାଜା ତଥା ମରହଟ୍ଟାମାନଙ୍କ ଖାସ୍ ଶାସନାଧୀନ ହେଲା । ବଙ୍କାଡ଼ର ଶେଷ ରାଜା ହରିସେବକ ମାନସିଂହ ବଙ୍କାଡ଼ ଛାଡ଼ି ଯିବାର କିଛିବର୍ଷ ପରେ ବାଣପୁରରେ ଥିବା ତାଙ୍କର ସମସ୍ତ ସ୍ଥାବର ସମ୍ପତ୍ତିକୁ ରାଜପରିବାର ପ୍ରତିଷ୍ଠିତ ଶ୍ରୀ ରଙ୍ଗନାଥ ଓ ଚକାଦେବଙ୍କ ସେବା ପାଇଁ ଖଞ୍ଜିଦେଇଥିବାର ସ୍ପଷ୍ଟ ଅନୁମେୟ ।

ବଙ୍କାଡ଼ର ପତନପରେ ଭଗ୍ନ ରାଜପ୍ରସାଦ ସମ୍ପୂର୍ଣ୍ଣ ଧ୍ୱଂସ ହେବା ପୂର୍ବରୁ ପ୍ରଭୁ ଶ୍ରୀ ରଙ୍ଗନାଥଙ୍କ ପ୍ରତିମା ବାଣପୁର ବଜାର ମଧ୍ୟସ୍ଥଳରେ ଏକ ଅସ୍ଥାୟୀ ଚାଳଛପରଘରେ ପ୍ରତିଷ୍ଠା କରାଇ ବହୁ ଜମିବାଡ଼ି ଓ ସେବା ପୂଜାପାଇଁ ଅନେକ ସେବାୟତ ମାନଙ୍କୁ ନିଯୁକ୍ତି ଦିଆଯାଇଥିଲା । ରାସ୍ତାକୁ ଲାଗି ଏବେ ମଧ୍ୟ ଅବସ୍ଥିତ ଥିବା ଲମ୍ବାଟିଣ ଛପଣ ଘରଗୁଡ଼ିକ ପ୍ରଭୁଙ୍କ ବିଭିନ୍ନ ଭଣ୍ଡାର ଘର ରୂପେ

ପରିଚଗଣିତ ହେଉଥିଲା । ଖୀର, ଦହି, ଚାଉଳ, ଡ଼ାଲି ପନିପରିବା ଓ ଦିଅଁଙ୍କର ପିନ୍ଧା ବସ୍ତ୍ର ଓ ଅନ୍ୟାନ୍ୟ ଦୈନନ୍ଦିନ ଉପଯୋଗୀ ପଦାର୍ଥମାନ ଏହି ଘର ଗୁଡ଼ିକରେ ରଖାଯାଇଥିଲା । ଗଉଡ଼ମାନେ ମାନେ ପ୍ରତ୍ୟହ ପ୍ରତ୍ୟୁଷରୁ ଖିର, ଦହି ଭାର ନେଇ ପହଞ୍ଚୁଥିଲେ । ନିଜେ ରାଜା ପାରିକୁଦରୁ ସାମୟିକ ଆସି ଏହାର ତଦାରଖ କରୁଥିଲେ । ରାଜାଙ୍କ ଅଭିଳାଷ ଅନୁଯାୟୀ ଭଗବତୀ ପ୍ରତ୍ୟହ ମଙ୍ଗଳବାର ଯାତ୍ରା କଲାବେଳେ ଶ୍ରୀ ରଙ୍କନାଥଙ୍କଠାରୁ ଫୁଲମାଳ ପିନ୍ଧି କାହାଳି ବଜାଇ ଯିବାର ବିଧି ଏହିଠାରୁ ପ୍ରବର୍ତ୍ତିତ ହେଉଥିଲା । ନୀଳାଦ୍ରିପ୍ରସାଦ ଭଳି ଏଠାରେ ମଧ୍ୟ କିଛିବର୍ଷ ରଥଯାତ୍ରା, ଝୁଲଣ ଯାତ୍ରା ହେଉଥିବାର କେତେକ ତାଳପତ୍ର ପୋଥିରୁ ଜଣାଯାଏ । ବିଷରପାଟଣାର ଗୁଣ୍ଡିଚାବାଡ଼ି ତାହାର ଚାକ୍ଷୁଷ ପ୍ରମାଣ । ଝୁଲଣ ଯାତ୍ରାବେଳେ ଶ୍ରୀକୃଷ୍ଣ ରାସଲୀଳା ସେତେବେଳେ ଏ ଅଞ୍ଚଳରେ ପ୍ରସିଦ୍ଧ ଥିଲା । ଆଜିର ରାସମଣ୍ଡପ ତାହାର ମୂକସାକ୍ଷୀ । ଆବଶ୍ୟ କାଳର କରାଳ ବକ୍ଷରେ ସେସବୁର ଅବସାନ ଘଟି କାଳକ୍ରମେ ସବୁ ବନ୍ଦ ହୋଇଗଲା । ପୁନର୍ବାର ସ୍ଥାନୀୟ ଜନସାଧାରଣଙ୍କ ଅକ୍ଳାନ୍ତ ଉଦ୍ୟମରେ ଏଇ ଆଠଦଶବର୍ଷ ଧରି ଅବଲୁପ୍ତ ଜଗନ୍ନାଥ ସଂସ୍କୃତିର ପୁନରୁଦ୍ଧାର ଓ ଶ୍ରୀ ରଙ୍କନାଥଙ୍କ ତିନିରଥ ପୁନର୍ବାର ବାଣପୁର ଦାଣ୍ଡରେ ଗଡ଼ିଚାଲିଛି । ଶ୍ରୀ ରଙ୍କନାଥଙ୍କ ଭୂସମ୍ପତ୍ତି ସ୍ୱୟଂ ରାଜପରିବାରର ଥିବା ଯୋଗୁଁ ଓ ଶ୍ରୀ ରଙ୍କନାଥ ରାଜପ୍ରତିଷ୍ଠିତ ଦେବତା ହୋଇଥିବାରୁ ଏହି ଜମିବାଡ଼ି ୧୯୫୦ ମସିହା ପର୍ଯ୍ୟନ୍ତ ସୁରକ୍ଷିତ ହୋଇ ରହିଥିବାର ସମସ୍ତେ ଜାଣନ୍ତି । କାରଣ ଇଂରେଜ ସରକାର ଜମି ବନ୍ଦୋବସ୍ତ ବେଳେ ଶ୍ରୀ ରଙ୍କନାଥଙ୍କ ସମସ୍ତ ସ୍ଥାବର ସମ୍ପତ୍ତିର ମାରଫତ୍‌ଦାର ରୂପେ ସ୍ୱୟଂ ପାରିକୁଦ ରାଜା ରହିଥିଲେ । ରାଜାଙ୍କ କର୍ତ୍ତୃତ୍ୱ ଏହାଉପରେ ସମ୍ପୂର୍ଣ୍ଣ ସାବ୍ୟସ୍ତ ହୋଇଥିଲା । କିନ୍ତୁ ଚକାଦେବଙ୍କ ସମ୍ପତ୍ତିର ମାର୍ଫତ୍‌ଦାର ରାଜା ହୋଇପାରିନଥିଲେ । ଏଣୁ ତାଙ୍କର ସମସ୍ତ ସମ୍ପତ୍ତି କେବଳ ଦେବତ୍ତୋର ସମ୍ପତ୍ତି ରୂପେ ପରିଗଣିତ ହୋଇଥିଲା ।

ସେହି ସମୟରେ ମଧ୍ୟ ବଙ୍କାଡ଼ଗଡ଼ର ପ୍ରତ୍ୟକ୍ଷ ଠାକୁରାଣୀ ତାରିଣୀ (ତାରା) ହନ୍ତୁଆଡ଼ ନିକଟରେ ଥିବା ଟିକିରାଇ ମନ୍ଦିରକୁ ସ୍ଥାନାନ୍ତରିତ ହୋଇଥିବାର କେତେକ ମତ ଦିଅନ୍ତି । ଏହି ମନ୍ଦିରରେ ଅବସ୍ଥାପିତା ଉଗ୍ରଚଣ୍ଡୀ ମୂର୍ତ୍ତି ବୋଧହୁଏ ସେହି ତାରିଣୀ ଠାକୁରାଣୀ ଭଳି ମନେହୁଏ । ଏ ସମ୍ବନ୍ଧରେ ଅନେକ ପ୍ରକାର ମତ ଦେଉଥିବାରୁ ଏହାର ସତ୍ୟତା ପ୍ରମାଣ ସାପେକ୍ଷ ନୁହେଁ ।

ଆଉ ଏକ ଲୋକକଥା ଅନୁଯାୟୀ ବଙ୍କାଡ଼ର ପତନ ପରେ ଶ୍ରୀ ଜଗନ୍ନାଥଙ୍କ ପ୍ରତିମାକୁ ଚାଷଙ୍ଗରାରେ ସ୍ଥାପନ କରାଯାଉ ପତିତପାବନ ରୂପେ ପୂଜା କରାଗଲା । ସାହସପୁରଠାରେ ସୁଭଦ୍ରାଙ୍କ ପ୍ରତିମାକୁ ଲୋକେ ରଖି ପୂଜା କଲେ । ଏଣୁ ବଳଭଦ୍ରଙ୍କ ପ୍ରତିମା ଆଜିର ବାଣପୁର ଶ୍ରୀ ରଙ୍ଗନାଥ ମନ୍ଦିରରେ କେବଳ ପ୍ରତିଷ୍ଠିତ ହୋଇଥିବାର ଆଉ କେତେକ ମତ ଦିଅନ୍ତି । କିନ୍ତୁ ପାରିକୁଦ ରାଜପରିବାରୁ ଏ ସମ୍ବନ୍ଧରେ କିଛି ପ୍ରମାଣ ମିଳିପାରୁନାହିଁ । ବରଂ ପାରିକୁଦ ରାଜପରିବାରରେ ଶ୍ରୀ ରଙ୍ଗନାଥଙ୍କ ପୂଜା, ପାର୍ବଣ ବିଧିମତେ ପାଳନ ହେଉଥିବାର ପ୍ରମାଣ ମିଳିପାରୁଛି । ଏଥିରେ ଶ୍ରୀ ରଙ୍ଗନାଥ ବହୁକାଳରୁ ୮ଟି ଶାସନର ବ୍ରାହ୍ମଣମାନଙ୍କଦ୍ୱାରା ପୂଜିତ ହେଉଥିବାର କୁହାଯାଇଅଛି । ଏହି ଶାସନର ବ୍ରାହ୍ମଣ, ପୁରୋହିତ ଓ ପଣ୍ଡିତ ମାନେ ଏହି ମନ୍ଦିରର ପରିଚାଳନାରେ ବିଶେଷ ଭାଗନେଉଥିବାର କୁହାଯାଏ । ସେଗୁଡ଼ିକ ହେଲା ଅଚ୍ୟୁତରାଜପୁର, ଗୋପାଳପୁର, ପୁଞ୍ଜିଆମା ଶାସନ, ଶ୍ରୀନିବାସପୁର, ଭୀମପୁର, ଗଙ୍ଗାଧରପୁର, ଜୀବନଦେଇପୁର ଓ ଛୋଟରାୟପୁର । କିନ୍ତୁ ଆଜି ଏହି ଶାସନ ବ୍ରାହ୍ମଣମାନଙ୍କର ଶ୍ରୀ ରଙ୍ଗନାଥ ମନ୍ଦିର ପରିଚାଳନାରେ ବିଶେଷ କିଛି ଭୂମିକା ଥିବାର ମନେ ହୁଏ ନାହିଁ ।

# ମରହଟ୍ଟା ଶାସନରେ ଉତ୍ପୀଡ଼ିତ ଜନତା

୧୭୬୪ ମସିହାରେ ଖୋର୍ଦ୍ଧା ରାଜା ବୀରକିଶୋର ଦେବ ଓ ତାଙ୍କ ସାହାଯ୍ୟକାରୀ ମରହଟ୍ଟାମାନଙ୍କ ମଧ୍ୟରେ ଯେଉଁ ଚୁକ୍ତି ହୋଇଥିଲା ସେଥିରେ ଖୋର୍ଦ୍ଧା ରାଜା ମରହଟ୍ଟାମାନଙ୍କୁ ତାଙ୍କ ରାଜ୍ୟଭୁକ୍ତ କେତେକ ଅଞ୍ଚଳର ଖଜଣା ଧାରସୁତ୍ରରେ ଦେଇଥିଲେ । ବଙ୍କାଡ଼ ବା ବାଣପୁର ଚିଲିକା ଅଞ୍ଚଳ ଏହି ଚୁକ୍ତି ଭିତରେ ଅନ୍ତର୍ଭୁକ୍ତ ଥିଲା । ଏଣୁ ମରହଟ୍ଟା ମାନଙ୍କ ପ୍ରାଦୁର୍ଭାବ ଏ ଅଞ୍ଚଳରେ ବହୁଳ ଭାବରେ ଦେଖାଯାଇଥିଲା ।

ସେମାନେ ଗାଁ ଗାଁ ବୁଲି ଖଜଣା ପାଇଁ ଯାହା ପାଉଥିଲେ ଲୁଟି ନେଉଥିଲେ । ଏବେ ମଧ୍ୟ ପ୍ରବାଦ ଅଛି, ଲମ୍ବା ଲମ୍ବା ପଗଡ଼ି ପିନ୍ଧା ମଣିଷ (ପାଇଜାମା କୁର୍ତ୍ତା ପିନ୍ଧା) ୬/୭ ହାତ ଠେଙ୍ଗା ବା ଲାଠି ଧରି ଗାଁ ଗାଁରେ ପ୍ରବେଶ କରୁଥିଲେ ।ସେମାନଙ୍କୁ ସେତେବେଳେ ଅନେକ କାବୁଲିବାଲା ବୋଲି କହୁଥିଲେ । ଏହି କାବୁଲିବାଲା ମାନେ ଗାଁରେ ପ୍ରବେଶ କଲେ ଲୋକେ ତାଟି କବାଟ କିଳି ରହୁଥିଲେ କିମ୍ବା ଗାଁ ଛାଡ଼ି ଚାଲିଯାଉଥିଲେ ।

ଏହି ସୁଯୋଗରେ ତତ୍‌କାଳୀନ ଧନୀ ଜମିଦାରମାନେ ଏହିମାନଙ୍କ ସାହାଯ୍ୟରେ ସାମାନ୍ୟ ଅର୍ଥ ସୁଧ ଆକାରରେ ଦେଇ ଅନେକ ଚାଷୀ ମୂଲିଆ ମାନଙ୍କୁ ସେମାନଙ୍କ ପୁରୁଷାନୁ କ୍ରମେ ଥିବା ଜମିବାଡ଼ିରୁ ବିତାଡ଼ିତ କରୁଥିଲେ । କାବୁଲିବାଲା ବା ମରହଟ୍ଟା କର୍ମଚାରୀମାନଙ୍କ ମାଧ୍ୟମରେ ଏହି ଧନୀ ଜମିଦାରମାନେ ଏକ ପ୍ରକାର ଦୌରାତ୍ମ୍ୟ ସୃଷ୍ଟି କରିଥିବାର ଅନେକ ମତ ଦିଅନ୍ତି ।

ଖୋର୍ଦ୍ଧା ରାଜାଙ୍କ ଖାସ୍ ଶାସିତ ବାଣପୁର ଚିଲିକା ଅଞ୍ଚଳ ଏକ ପ୍ରକାର ଏହି ମରହଟ୍ଟା ଦଲାଲ୍‌ମାନଙ୍କଦ୍ୱାରା ଉତ୍ପୀଡ଼ିତ ହୋଇଥିଲା ।

ଯଦି କାଁ ଭାଁ କିଏ ଏ ବିଷୟରେ ଖୋର୍ଦ୍ଧା ଗଜପତିଙ୍କ ନିକଟରେ ଆପତ୍ତି ଓଜର କରୁଥିଲା ଓ ସେତେବେଳେ ଏହି ଜମିଦାରମାନେ ରାଜାଙ୍କ ନିକଟକୁ ବିପରୀତ ଖବର ଦେଇ ସବୁ ଲୁଚାଇ ନେଉଥିଲେ ।

ବ୍ରାହ୍ମଣମାନଙ୍କୁ ଏହି ମରହଟ୍ଟା କର୍ମୀ ଦଳ ଭକ୍ତି ଓ ଶ୍ରଦ୍ଧା କରୁଥିବାରୁ ଦେବ ମନ୍ଦିର, ଦେବ ସମ୍ପତ୍ତି ଉପରେ ଏମାନେ କୌଣସି ପ୍ରକାର ଦୌରାତ୍ମ୍ୟ କରୁନଥିଲେ। ବିଶେଷତଃ ଶିବ ମନ୍ଦିର ମାନଙ୍କୁ ସେମାନେ ବରଂ ଆର୍ଥିକ ସହାୟତା ଦେଉଥିବାର କେତେ କୁହନ୍ତି ।

ବୀର କିଶୋର ଦେବଙ୍କ ପରେ ଦିବ୍ୟସିଂହ ଦେବ ଖୋର୍ଦ୍ଧା ରାଜା ହେବା ପରେ ମରହଟ୍ଟା ମାନଙ୍କ ପ୍ରାଦୁର୍ଭାବ କମାଇବା ପାଇଁ ସେ ଯଥେଷ୍ଟ ନାସ୍ତି ଚେଷ୍ଟା କରିଥିଲେ। ବାଣପୁର ଓ ଚିଲିକା ଅଞ୍ଚଳର ଜମିଦାରମାନଙ୍କୁ ଡ଼କାଇ ଏହି କାବୁଲିବାଲା ମାନଙ୍କ ଅତ୍ୟାଚାରରୁ ଲୋକଙ୍କୁ ରକ୍ଷା କରିବା ଓ ପ୍ରତିରୋଧ ପାଇଁ ବଙ୍କାଡ଼ର ସମସ୍ତ ଚାଟ ଓ ଭାଟ ମାନଙ୍କୁ ମେଳାଇ ଏ ଅନୁରୋଧ କରିଥିଲେ। କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ସେହି ସମୟରେ ଇଂରେଜମାନଙ୍କ ବାରମ୍ବାର ଆକ୍ରମଣ ଯୋଗୁଁ ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଲେ ।ଏଣୁ ବିଶେଷ କିଛି କରିପାରିଲେ ନାହିଁ ।

# ଇଂରେଜ ଶାସନରେ ବାଣପୁର

୧୮୦୦ ମସିହା ପ୍ରାରମ୍ଭରେ ଦିବ୍ୟସିଂହ ଦେବଙ୍କ ପରେ ନାବାଳକ ମୁକୁନ୍ଦଦେବ ରାଜା ହୋଇଥିଲେ ମଧ୍ୟ କେତେକ ଖଳ ପ୍ରକୃତିର ଲୋକଙ୍କ ପ୍ରରୋଚନାରେ ବାଳୁତ ରାଜା ବନ୍ଦୀ ହୋଇ ମେଦିନୀପୁର ଜେଲରେ ସମୟ ଅତିବାହିତ କଲେ ଓ ପରେ ପରେ ତାଙ୍କର ଲିଖିତ ଅନୁରୋଧରେ ଇଂରେଜ ସରକାର ମୁକ୍ତିଦେଇ ପୁରୀର ବାଲିସାହି ରାଜପ୍ରସାଦରେ ବସବାସ କରିବାକୁ ନିର୍ଦ୍ଦେଶ ଦେଲେ ଏବଂ ଜଗନ୍ନାଥଙ୍କ ସେବା ପୂଜାପାଇଁ ଉଦ୍ଦିଷ୍ଟ ସମସ୍ତ ଭୂସମ୍ପତ୍ତି ଫେରାଇ ଦେଲେ । କିନ୍ତୁ ଖୋର୍ଦ୍ଧା ରାଜ୍ୟକୁ ନିଜ ଅଧୀନକୁ ନେଲେ । ସେହିଦିନଠାରୁ ଅର୍ଥାତ୍ ୧୮୦୩ ମସିହାରୁ ଖୋର୍ଦ୍ଧା ରାଜ୍ୟ ଇଂରେଜ ଶାସନାଧୀନ ହୋଇଥିବାର ଇତିହାସରୁ ଉଦ୍ଧୃତ ।

ଖୋର୍ଦ୍ଧା ରାଜ୍ୟ ଇଂରେଜ ଶାସନାଧୀନ ହେବାପରେ ବାଣପୁର ତଥା ଚିଲିକା ଅଞ୍ଚଳ ମଧ୍ୟ ଇଂରେଜ ଶାସନାଧୀନ ହେଲା । ଏଣୁ ଇଂରେଜମାନଙ୍କ ତୀବ୍ର ପ୍ରତିରୋଧରେ ମରହଟ୍ଟାମାନେ ଏ ଅଞ୍ଚଳ ଛାଡ଼ି ଚାଲିଯାଇଥିବା ସ୍ପଷ୍ଟ ଅନୁମିତ । ସେହି ସମୟରୁ କାବୁଲିବାଲା ମାନଙ୍କ ଅତ୍ୟାଚାରରୁ ଏହି ଅଞ୍ଚଳ ମୁକ୍ତ ହେଲା ସତ୍ୟ କିନ୍ତୁ ଇଂରେଜମାନଙ୍କ ଶାସନ ଭିତରେ ବିଗହରା ହୋଇ ଉଠିଲା ।

୧୮୦୪ ମସିହା ପରେ ଇଂରେଜ ଶାସନାଧୀନ ଖୋର୍ଦ୍ଧା ରାଜ୍ୟରେ ମୁଖ୍ୟ ଦୁଇଟି ଥାନା ବାଣପୁର ଓ ଖୋର୍ଦ୍ଧାରେ ଖୋଲାଯାଇଥିବାର ଇତିହାସରୁ ସୁସ୍ପଷ୍ଟ । ଏହି ସମୟରେ ବକ୍ସି ଜଗବନ୍ଧୁ ଓ ଦେୱାନ କୃଷ୍ଣଚନ୍ଦ୍ର ରାୟଙ୍କ ସମସ୍ତ ନିଷ୍କର ଜାଗିରିକୁ ଇଂରେଜ ସରକାର ଦଖଲକୁ ନେଇଯିବାରୁ ସେମାନେ ମ୍ରିୟମାଣ ହୋଇପଡ଼ିଥିଲେ ଓ ସୁଯୋଗ ଅପେକ୍ଷାରେ ରହିଥିଲେ ।

୧୮୦୬ ମସିହା ପ୍ରାରମ୍ଭରୁ ବାଣପୁର ଅଞ୍ଚଳର ସମସ୍ତ ପାଇକ, ପାଇକସର୍ଦ୍ଦାର ଓ ଦଳବେହେରାମାନଙ୍କ ନିଷ୍କର ଭୂସମ୍ପତ୍ତିକୁ ମଧ୍ୟ ଇଂରେଜ

ସରକାର ଦଖଲ କରିନେଲେ । ଏଣୁ ପାଇକ, ପାଇକ ସର୍ଦ୍ଦାର ଓ ଦଳବେହେରାମାନେ ଅତ୍ୟନ୍ତ ଦୁଃଖରେ କାଳାତିପାତ କରୁଥିଲେ ।

ଖୋର୍ଦ୍ଧା ଇଂରେଜ ଶାସନାଧୀନ ହେବାର ୪୦ବର୍ଷ ପୂର୍ବରୁ ଗଞ୍ଜାମ ଜିଲ୍ଲା ଇଂରେଜ ଶାସନାଧୀନ ହୋଇସାରିଥିଲା । ଏଣୁ ଏହି ଇଂରେଜମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇପଡ଼ିଥିବା ଘୁମୁସରର ଭଞ୍ଜରାଜାମାନେ ଓ ଆଦିବାସୀ କନ୍ଧ ପାଇକମାନେ ଖୋର୍ଦ୍ଧାରାଜ୍ୟର ଏହି ଦକ୍ଷିଣାଞ୍ଚଳ ବାଣପୁର ଅଞ୍ଚଳକୁ ବେଳେ ବେଳେ ପଶିଆସି ଲୁଟ୍‌ପାଟ୍ କରିବା ସଂଗେ ସଂଗେ ବିଦ୍ରୋହର ମଞ୍ଜି ବୁଣୁଥିଲେ । ବାଣପୁରର ପାଇକ ସର୍ଦ୍ଦାର ଓ ଦଳବେହେରାମାନେ ଏହି ସୁଯୋଗରେ ଏକ ବିଦ୍ରୋହର ବହ୍ନି ସୃଷ୍ଟି କରିବା ପାଇଁ ପ୍ରାଥମିକ ପ୍ରସ୍ତୁତି କରିଥିବାର ଅନେକ କୁହନ୍ତି । ପାଇକ ବିଦ୍ରୋହର ଅଗ୍ନିସ୍ଫୁଲିଙ୍ଗ ବାଣପୁରରୁ ଉଦ୍ଭବ ହେଲା ।

୧୮୧୭ ମସିହାରେ ଘୁମୁସରର ୪୦୦ ବିଦ୍ରୋହୀ କନ୍ଧ ପାଇକ ହଠାତ୍ ବାଣପୁର ଥାନାରେ ପ୍ରବେଶକରି ସମସ୍ତ ସରକାରୀ କୋଠାବାଡ଼ି ପୋଡ଼ିଦେବା ସଂଗେ ସଂଗେ ବାଣପୁର ଖଜଣାଖାନା ଲୁଟି କଲେ । ଏହି ବିଦ୍ରୋହୀମାନଙ୍କୁ ବାଣପୁରର ସମସ୍ତ ପାଇକ ସର୍ଦ୍ଦାର ଓ ଦଳବେହେରାମାନେ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କଲେ । ବାଣପୁରରୁ ଜାତ ଏହି ବିଦ୍ରୋହର ଅଗ୍ନି ସ୍ଫୁଲିଙ୍ଗ ଚାହୁଁ ଚାହୁଁ ସମସ୍ତ ଖୋର୍ଦ୍ଧା, ପୁରୀ, ପିପିଲି ପ୍ରଭୃତି ଅଞ୍ଚଳକୁ ବକ୍ସି ଜଗବନ୍ଧୁ ଓ ଦେୱାନ କୃଷ୍ଣଚନ୍ଦ୍ର ରାୟଙ୍କ ପୃଷ୍ଠପୋଷକତାରେ ବ୍ୟାପିଗଲା । ଛତ୍ରଗଡ଼ଠାରୁ ଗଙ୍ଗପଡ଼ା ଓ ସେପଟେ ପୁରୀ ପର୍ଯ୍ୟନ୍ତ ବିଦ୍ରୋହର ବହ୍ନି ଦାଉ ଦାଉ ହୋଇ ଜଳିଲା । ଇଂରେଜ ସରକାର ଏକପ୍ରକାର ଭୀତତ୍ରସ୍ତ ହୋଇପଡ଼ିଲେ । ତେବେ ପ୍ରବଳ ଶକ୍ତିଶାଳୀ ଇଂରେଜ ସରକାର ଏହାକୁ ପ୍ରତିରୋଧ କରିବା ପାଇଁ ସମସ୍ତ ଶକ୍ତି ପ୍ରୟୋଗ କରିବାକୁ ଲାଗିଲେ । ଗଙ୍ଗପଡ଼ାଠାରେ କ୍ୟାପ୍‌ଟେନ୍ ପେରିସ୍‌ଙ୍କୁ

ବିଦ୍ରୋହୀମାନେ ହତ୍ୟାକରିବା ପରେ ପରେ ଇଂରେଜ ସରକାର ରକ୍ତମୁଖା ହୋଇଉଠିଲେ । କଟକ କଲେକ୍‌ଟର ଇମ୍ପି ସାହେବ ସୈନ୍ୟସାମନ୍ତ ଧରି ଗଙ୍ଗପଡ଼ାଠାରେ ପହଞ୍ଚି କିଛି କରିନପାରି ତାପୂର୍ବରୁ ଫେରିଯାଇଥିଲେ । ସେହିବର୍ଷ ଏପ୍ରିଲ୍ ୩ ତାରିଖ ଦିନ ଗଙ୍ଗପଡ଼ାରେ କେତେକ ସୈନ୍ୟ ସହ ଶିବିର ସ୍ଥାପନ କରି ରହିଥିବା କ୍ୟାପ୍‌ଟେନ୍ ପେରିସ୍ ସାହେବଙ୍କୁ ବିଦ୍ରୋହୀମାନେ ହତ୍ୟା କରିଥିଲେ ।

ଏଥର ରକ୍ତମୁଖା ଗୋରା ସାହେବମାନେ ଏପ୍ରିଲ୍ ୧୮ ତିରିଖରେ ୫୦୦ ବନ୍ଧୁକଧାରୀ ସୈନ୍ୟଙ୍କ ସହ ଦୋବନ୍ଧାଠାରେ ଘାଟି କରିଥିବା ହଜାର ହଜାର ପାଇକ ସୈନ୍ୟମାନଙ୍କୁ ତୀବ୍ର ଆକ୍ରମଣ କରି ଅସ୍ତବ୍ୟସ୍ତ କରିପାକାଇଲେ । ଅନେକ ଏହି ଯୁଦ୍ଧରେ ନିହତ ହେଲେ ଓ ଅନେକ ଛତ୍ରଭଙ୍ଗ ଦେଇ ପଳାୟନ କଲେ । ଏହିଠାରୁ ଏହି ପାଇକ ବିଦ୍ରୋହ ପ୍ରଶମିତ ହେଲା ।

ଇଂରେଜ ସୈନ୍ୟମାନେ ଏହି ଯୁଦ୍ଧ କ୍ୟାପ୍‌ଟେନ୍ ଲି ଫାଂବ୍ରେଙ୍କ ଅଧୀନରେ ଲଢି ଆଖିବୁଜା ଗୁଳି ଚାଳନା କରିବା ଫଳରେ ବହୁ ପାଇକ ନିହତହେଲେ। କେତେକ ଗୁରୁତର ଆହତ ହୋଇଥିଲେ ତାହାର ହିସାବ କେହି ଦେଇପାରିନଥିଲେ ।

ଏଥିରେ ବାଣପୁର ଅଞ୍ଚଳର ଅନେକ ପାଇକସେନା ନିହତ ହେବା ଓ ଅନେକ ଖଣ୍ଡିଆଖାବରା ହୋଇ ପଙ୍ଗୁ ହୋଇଯାଇଥିବାର ଅନେକ କୁହନ୍ତି ।

ପରିଶେଷରେ ଲି ପାଠବ୍ରେ ପୁରୀ ବାଲିସାହି ଉଆସରୁ ଏପ୍ରିଲ୍ ୨୦ରେ ମୁକୁନ୍ଦଦେବଙ୍କୁ ବନ୍ଦୀକରି ନେଇଯିବାପରେ ଏହି ବିଦ୍ରୋହ ପ୍ରଶମିତ ହେଲା । ବକ୍ସି ଜଗବନ୍ଧୁ ଏହାପରେ ପରେ ଆତ୍ମଗୋପନ କରି ରହିଲେ ।

ଖୋର୍ଦ୍ଧାର ଏହି ପାଇକ ବିଦ୍ରୋହ ପରେ ପରେ ବାଣପୁର ଅଞ୍ଚଳରେ ଗୋରା ସୈନ୍ୟମାନଙ୍କ ଏକ ସ୍ୱତନ୍ତ୍ର କ୍ଷୁଦ୍ର ଛାଉଣି ଖୋଲିଲା । କାରଣ ବାଣପୁରରୁ

ଉଭବ ଏହି ପାଇକ ବିଦ୍ରୋହ ଦାବାନଳ ଭଳି ଆଉ ଜାଳିଦେବାକୁ ତତ୍କାଳୀନ ଇଂରେଜ ସରକାରର ଖୋର୍ଦ୍ଧା ଶାସକ ଫ୍ଲେଚର୍ ସାହେବ ବାଣପୁର ପ୍ରତାପ ରୋଡ଼ର ଆରମ୍ଭର ଏବର ଗୋବିନ୍ଦପୁର ଗାଁ ରାସ୍ତାର ଉତ୍ତର ପାର୍ଶ୍ୱରେ ଏକ ଟିଣ ଛପର ବୃହତ୍ କ୍ୟାବିନ୍ ନିର୍ମାଣ କରାଇ ଏହି ଗୋରା ସୈନ୍ୟମାନଙ୍କୁ ମୁତୟନ କରିଥିଲେ । ପରବର୍ତ୍ତୀକାଳରେ ଲୋକେ କହିବୁଲିଲେ, ଏହା ଗୋରା ସାହେବମାନଙ୍କ ପାଇଁ ପାଇଖାନା ହୋଇଥିଲା । ଏହିଠାରେ ବନ୍ଧୁକଧାରୀ ଗୋରା ସୈନ୍ୟମାନେ ରହୁଥିବାରୁ ଏହି ରାସ୍ତା ଦେଇ ଲୋକେ ଯିବାଆସିବା କରିବାକୁ ଭୟ କରି ଅଚ୍ୟୁତରାଜପୁର, ଶ୍ରୀନିବାସପୁର ଓ ତତ୍କାଳୀନ ପଟ୍ଟା ଶଂଖଦେଇ ଭଗବତୀ ଦର୍ଶନ ଓ ବାଣପୁର ବଜାର ଯାଉଥିଲେ । ଏହି ସୈନ୍ୟମାନେ ପୋଡ଼ିଯାଇଥିବା ଓ ଲୁଟ୍ ହୋଇଥିବା ବାଣପୁର ଥାନା ଓ ଅନ୍ୟାନ୍ୟ ସରକାରୀ କାର୍ଯ୍ୟାଳୟ ଗୁଡ଼ିକର ସୁରକ୍ଷାପାଇଁ କଡ଼ା ଆଇନ୍ କରିଥିବାରୁ ଲୋକେ ଭୟତ୍ରସ୍ତ ହୋଇ ରହିଥିଲେ ।

ଲୋକମାନଙ୍କୁ ଏକତ୍ର ହେବାକୁ ମନା ଥିବାରୁ ସେଠି କେତେବର୍ଷ ଭଗବତୀଙ୍କ ଜାନିଯାତ୍ରା ଓ ପଞ୍ଚଦୋଳ ମେଳନ ବନ୍ଦ ହୋଇଥିବାର କେତେକ ମତ ଦିଅନ୍ତି ।

୧୮୧୮ଠାରୁ ୧୮୩୦ ମଧ୍ୟରେ ବାଣପୁର ତଥା ଖୋର୍ଦ୍ଧା ଅଞ୍ଚଳରେ ଇଂରେଜ ଶାସନର କଡ଼ା ଆଇନ୍ ଓ ଇଂରେଜ ସୈନ୍ୟମାନଙ୍କ ଦୌରାତ୍ମ୍ୟରେ ଲୋକେ ନୀରବତା ଅବଲମ୍ବନ କରିଥିବା ଐତିହାସିକ ମାନେ କୁହନ୍ତି ।

୧୮୨୫ରେ ଆତ୍ମଗୋପନ କରିଥିବା ବକ୍ସି ଜଗବନ୍ଧୁଙ୍କୁ ମୁକ୍ତି ଦେଇ ତାଙ୍କୁ କଟକର ବକ୍ସିବଜାରଠାରେ ସରକାରୀ ସାହାଯ୍ୟ ଦେଇ ରଖାଗଲା । ଏଣୁ ପାଇକମାନଙ୍କ ମଉଡ଼ମଣିଙ୍କର ଆଉ ରଣହୁଙ୍କାର ଶୁଭିଲା ନାହିଁ । ଏଣେ ସମସ୍ତ ପାଇକ ଓ ଦଳବେହେରା ନିଷ୍କ୍ରିୟ ହୋଇପଡ଼ିଲେ ।

# ବାଣପୁରରେ ଶେଷ ସ୍ୱାଧୀନତା ଆନ୍ଦୋଳନ ଓ ପଞ୍ଚୁଆ ଫତୁରି ଉପାଖ୍ୟାନ

୧୮୨୯ ଖ୍ରୀଷ୍ଟାବ୍ଦ ଜାନୁଆରୀ ୨୪ ତାରିଖରେ କଟକରେ ବକ୍ସିଙ୍କ ମୃତ୍ୟୁହେବାପରେ ଇଂରେଜ ସରକାର ବକ୍ସିଙ୍କ ରୋଡ଼ଙ୍ଗ ଜମିଦାରୀକୁ ତାଙ୍କ ପୁଅ ଗୋପୀନାଥ ବିଦ୍ୟାଧରଙ୍କୁ ଫେରାଇ ଦେଲେ । କିନ୍ତୁ ଖୋର୍ଦ୍ଧାର ଅନ୍ୟାନ୍ୟ ପାଇକ ସର୍ଦ୍ଦାରମାନଙ୍କୁ ଜମିଦାରୀ ଆଉ ମିଳିଲା ନାହିଁ । ବରଂ ସେମାନଙ୍କ ନିଷ୍କର ଜମି ଉପରେ ଖଜଣା ଧାର୍ଯ୍ୟ ହେଲା । ଏଣୁ ଭିତରେ ଭିତରେ ସେମାନେ ବିଦ୍ରୋହ କରିବାପାଇଁ ଉଦ୍ୟମ ଜାରି ରଖିଥିଲେ ।

୧୮୩୬ ମସିହା ପୁଣିଥରେ ବାଣପୁର ଅରାଙ୍ଗଗଡ଼ର ଦଳବେହେରା କୃତ୍ତିବାସ ପାଟଶାଣୀ ଇଂରେଜ ସରକାର ବିରୋଧରେ ବିଦ୍ରୋହ କରି ବାଣପୁରକୁ ୩ଦିନ ପାଇଁ ସ୍ୱାଧୀନ ଘୋଷଣା କରିଥିଲେ ।

ଏଥିରେ ରୋଡ଼ଙ୍ଗଗଡ଼ର ପଞ୍ଚାନନ ନାୟକ ଏହି ୩ଦିନ ସ୍ୱାଧୀନତା ଘୋଷଣା ଭିତରେ ବାଣପୁରର ରାଜା ହୋଇଥିଲେ । ଏହାକୁ ପଞ୍ଚୁଆ ଫତୁରି ଉପାଖ୍ୟାନ କୁହାଯାଏ ।

ବାଣପୁରର ମଧୁ ବିଶୋଇ ବକ୍ସି ଜଗବନ୍ଧୁଙ୍କର ଜଣେ ସହଯୋଗୀ ବିଦ୍ରୋହୀ ଥିଲେ । ୧୮୨୫ ରେ ବକ୍ସିଙ୍କ ଆତ୍ମପ୍ରକାଶ ପରେ ସେ ମଧ୍ୟ ବାଣପୁରରେ ଆତ୍ମପ୍ରକାଶ କରିଥିଲେ । ସେ ଗାଁକୁ ଆସିବାପରେ ତାଙ୍କର ୨ପୁଅ ଲୋଚନ ବିଶୋଇ, ଶିବ ବିଶୋଇ ଓ ଅରାଙ୍ଗ ଦଳବେହେରା ଶ୍ୟାମସୁନ୍ଦର ପାଟଶାଣୀଙ୍କ ପୁଅ କୃତ୍ତିବାସ ପାଟଶାଣୀଙ୍କୁ ତାଙ୍କର ଓ ବକ୍ସି ଜଗବନ୍ଧୁଙ୍କ କିପରି ମିଳନ ଘଟି ଓଡ଼ିଶାରେ ଏକ ଶକ୍ତ ପାଇକ ବିଦ୍ରୋହ ହୋଇଥିଲା ବର୍ଣ୍ଣନା କରିବା ସଂଗେ ସଂଗେ ମାଆମାଟିର ଯୋଗ୍ୟ ସନ୍ତାନ ହିସାବରେ ସେମାନେ ପୁନର୍ବାର ଆନ୍ଦୋଳନ କରିବାକୁ ମତାଇଥିବାର କୁହାଯାଏ ।

୧୮୩୬ ମସିହା ଜୁନ୍ ମାସ ୧ ତାରିଖରେ ଅରାଙ୍ଗ ଗଡ଼ରେ ଏହାର ପ୍ରଥମ ମୂଳଦୁଆ ପଡ଼ିଥିଲା । କୃତ୍ତିବାସ ପାଟଶାଣୀ, ଲୋଚନ ବିଶୋଇ, ଶିବ ବିଶୋଇ, ପଞ୍ଚାନନ ନାୟକ, ସାଧୁ ଜାନୀ, ଦୀନା ଜାନୀ ପ୍ରଭୃତି ବିଦ୍ରୋହୀ ମାନେ ଏକ ସଭାରେ ମିଳିତ ହୋଇ ବାଣପୁରକୁ ଇଂରେଜ ଶାସନରୁ ମୁକ୍ତକରିବା ପାଇଁ ଏକ ସିଦ୍ଧାନ୍ତ ଗ୍ରହଣ କଲେ ଓ ରୋଡ଼ଙ୍ଗର ପଞ୍ଚାନନ ନାୟକଙ୍କୁ ବକ୍ସିଙ୍କ ଭଳି ସେମାନଙ୍କ ନେତା ରୂପେ ନିର୍ବାଚନ କଲେ । ଏହି ବୈଠକରେ ହିଁ ବାଣପୁରକୁ ଏକ ସ୍ୱାଧୀନ ରାଜ୍ୟ ଓ ପଞ୍ଚାନନଙ୍କୁ ବାଣପୁରର ରାଜା ଶରଣ ସିଂହ ରୂପେ ଘୋଷଣା କଲେ । କୃତ୍ତିବାସ ପାଟଶାଣୀ ଏହି ରାଜାଙ୍କ ପ୍ରଧାନମନ୍ତ୍ରୀ ତଥା ସେନାପତି ହେଲେ । ପ୍ରବଳ ଆନନ୍ଦ ଉତ୍ସାହ ମଧ୍ୟରେ ରାଜା ଓ ମନ୍ତ୍ରୀଙ୍କ ଶାଡିବନ୍ଧା ଉତ୍ସବ ପାଳିତ ହେଲା ।

ଜୁନ୍ ୪ ତାରିଖ ରାତିରେ ସେନାପତି କୃତ୍ତିବାସ ପାଟଶାଣୀ, ସର୍ଦ୍ଦାର ଲୋଚନ ବିଶୋଇ ତାଙ୍କର କନ୍ଧ ପାଇ ଫୌଜଧରି ଅରାଙ୍ଗରୁ ବାଣପୁର ଅଭିଯାନ କଲେ । ସେମାନଙ୍କ ସହିତ ଆଖପାଖ ଅନେକ ଗାଁର ପାଇକ ଓ ଦଳବେହେରାମାନେ ଅତ୍ୟନ୍ତ ଆନନ୍ଦର ସହ ଯୋଗ ଦେଲେ । ଏହିଭଳି ଭାବରେ ଶହ ଶହ ବିଦ୍ରୋହୀ ଅସ୍ତ୍ର ଶସ୍ତ୍ର ସଜ୍ଜିତ ହୋଇ ପାହାନ୍ତିଆ ବେଳକୁ ବାଣପୁରଠାରେ ରୁଣ୍ଡ ହେଲେ । ୫ ତାରିଖ ସକାଳେ ଚାହୁଁ ଚାହୁଁ ଚତୁର୍ଦ୍ଦିଗରୁ ହଜାର ହଜାର ସଶସ୍ତ୍ର ପାଇକ ସୈନ୍ୟମାନେ ଏମାନଙ୍କ ସହ ମିଶି ବାଣପୁର ସହରରେ ପଶିଲେ, ଓ ସରକାରୀ ପକ୍ଷ ଲୋକଙ୍କ ଘରେ ପଶି ଲୁଟ୍‌ପାଟ୍ କଲେ ଓ ଘରେ ନିଆଁ ଲଗାଇଦେଲେ । ସମଗ୍ର ବାଣପୁର ସହରରେ କୋକୁଆ ଭୟ ଖେଳିଗଲା । ଏଥି ସହ ଏମାନେ ବାଣପୁର ଧନୀ ବ୍ୟବସାୟୀ ଓ ନିକଟସ୍ଥ ଗାଁ ମାନଙ୍କର ଧନୀ ଜମିଦାରମାନଙ୍କ ଘର ଲୁଟ୍‌ପାଟ୍ କରି ଦ୍ୱିପହର ବେଳକୁ ଭେଟେଶ୍ୱର ଠାରେ ରୁଣ୍ଡ ହେଲେ । ବାଣପୁରରେ ସମ୍ପୂର୍ଣ୍ଣ ଅରାଜକତା ବ୍ୟାପିଗଲା । ସେଦିନ ସଂଧ୍ୟାବେଳେ ରାଜା ଶରଣ ସିଂହ ବାଣପୁର ଅଞ୍ଚଳର ସବୁ ଦଳେଇ ଓ

ଦଳବେହେରାମାନଙ୍କୁ ପାଇକବାହିନୀ ସହ ରସଦ ପଠାଇବାକୁ ହୁକୁମ୍ ଜାରିକଲେ । ପ୍ରଧାନ ପ୍ରଧାନ ଲୋକଙ୍କଠାରୁ ମଧ୍ୟ ଗୋଳାବାରୁଦ ଓ ବନ୍ଧୁକ କିଣିବା ପାଇଁ ମାଗଣ ଆଦାୟ୍ ହେଲା ।

ରାଜା ଶରଣସିଂହ ପାଲିଙ୍କିରେ ଓ ସେନାପତି କୃତ୍ତିବାସ ପାଟଶାଣୀ ଘୋଡ଼ାରେ ଗାଁକୁ ଗାଁ ବୁଲି ମାଗଣ ଆଦାୟ୍ କଲେ । ଧନୀ, ବ୍ୟବସାୟୀ ମାନଙ୍କ ଘର ଲୁଟ୍ କରିବାକୁ ମଧ୍ୟ ପଛାଇଲେ ନାହିଁ । ଫଳରେ ବହୁ ଧନୀ ଓ ଜମିଦାର ଲୋକମାନେ ଭୟରେ ମାଗଣ ଦେଲେ । କିନ୍ତୁ ପରୋକ୍ଷରେ ଏମାନଙ୍କୁ ଇଂରେଜ ସରକାରଙ୍କ ହାତରେ ଧରାଇ ଦେବାକୁ ଗୁପ୍ତ ମନ୍ତ୍ରଣା କରିବାରେ ଲାଗିଲେ ।

ଦୈବ ଯୋଗକୁ ତପର୍‌ଦିନ ପ୍ରତ୍ୟୁଷରୁ ଏହି ତଥାକଥିତ ରାଜା ଓ ସେନାପତି ବହୁ ପାଇକ ସେନା ସହ ବଡ଼କୂଳ ଆଡ଼େ ମାଡ଼ି ଚାଲିଲେ ଫଳରେ ବଡ଼କୂଳଠାରେ ଲୁଚି ରହିଥିବା ପୋଲିସ୍ ମାନେ ବଡ଼କୂଳଛାଡ଼ି ପଳାଇଯାଇ ଗାଁମାନଙ୍କରେ ଲୁଚିଲେ । ସେଠାରେ ଥିବା ଅନେକ ସରକାରୀ ନଥିପତ୍ର ଏମାନେ ଧ୍ୱଂସ କରିବା ସଂଗେ ସଂଗେ ସରକାରୀ ଖଜଣା ମଧ୍ୟ ଲୁଟ୍ କଲେ ।

ଏତିକିବେଳେ କୁଚକ୍ରୀଗୋଷ୍ଠୀ ଏକତ୍ର ହୋଇ ଏହି ତଥାକଥିତ ବାଣପୁରର ରାଜା ଓ ସେନାପତିଙ୍କୁ ଭୀମପୁରଠାରେ ସମ୍ବର୍ଦ୍ଧନା ଦେବା ବାହାନାରେ ସଭା ଡ଼କାଇ ଅତ୍ୟନ୍ତ ହୀନ ଚକ୍ରାନ୍ତ କରି ପୋଲିସ୍ ଦ୍ୱାରା ଧରାଇ ଦେଲେ । ଏଣୁ ବାଣପୁରର ଶେଷ ସ୍ୱାଧୀନତା ସଂଗ୍ରାମ ଏହିଠାରୁ ଶେଷ ହେଲା । କୃତ୍ତିବାସ ପାଟଶାଣୀ, ଶରଣସିଂହ ପ୍ରଭୃତି ବ୍ୟକ୍ତିମାନେ ପୋଲିସ୍‌ଦ୍ୱାରା ବନ୍ଦୀ ହୋଇ ଜେଲ୍‌ଗଲେ ।

ଅନ୍ୟ କେତେକଙ୍କ ମତରେ ଭୀମପୁରର ବସୁଦେବ ଦଳବେହେରା ଯିଏ କି କୃତ୍ତିବାସ ପାଟଶାଣୀଙ୍କ ଶ୍ୱଶୁର, ଇଂରେଜ ଦଲାଲ ମାନଙ୍କ ଦ୍ୱାରା ପ୍ରରୋଚିତ ହୋଇ ନିଜ ଜ୍ୱାଇଁଙ୍କୁ ପୋଲିସ୍ ହାତରେ ଧରାଇ ଦେଇଥିଲେ । ଏହି

ମତକୁ ଶ୍ରୀଯୁକ୍ତ ପର୍ଶୁରାମ ହରିଚନ୍ଦନ ତାଙ୍କର ଏକ ନାଟକରେ ବିସ୍ତୃତ ଭାବରେ ଦର୍ଶାଇଛନ୍ତି । ପରବର୍ତ୍ତୀକାଳରେ ବ୍ରିଟିଶ ଦରବାରରେ ଆଇନ୍ ଅନୁଯାୟୀ ଉଭୟ କୃତ୍ତିବାସ ପାଟଶାଣୀ ଓ ଶରଣ ସିଂହଙ୍କୁ କଳାପାଣି ପଠାଇ ଦିଆଗଲା । ଓ ଅନ୍ୟ ମାନଙ୍କୁ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା । କାଳକ୍ରମେ ଏହି ଦଳବେହେରାମାନଙ୍କ ପ୍ରତିପତ୍ତି କମିଗଲା ଓ ଏମାନଙ୍କ ସ୍ଥାନରେ ଅନେକ ସରବରାକାର ଭାବରେ ମାନ୍ୟତା ପାଇଲେ ।

ତଥାପି ଇଂରେଜ ସରକାରଙ୍କ ଅମଳରେ ଭାଟପଡ଼ାର ଦଳବେହେରାଙ୍କୁ ଏ ଅଞ୍ଚଳର ଜଣେ ବିଶିଷ୍ଟ ଜମିଦାର ରୂପେ ସମ୍ମାନ ମିଳୁଥିଲା । ଗୋଡ଼ିଝରର ହରିଚନ୍ଦନ ବଂଶ ଏହି ଭାଟପଡ଼ା ଦଳବେହେରା ବଂଶର ଦାୟାଦ ଅଟନ୍ତି । ପର୍ଶୁରାମ ହରିଚନ୍ଦନ ଭାଟପଡ଼ା ଦଳହେହେରା ବାଞ୍ଛାନିଧି ମହାରଥୀଙ୍କ ପୁତୁରା ଅଟନ୍ତି ।

# ଊନବିଂଶ ଶତାବ୍ଦୀରେ ବାଣପୁରର କଳା ଓ ଶିକ୍ଷା ସଂସ୍କୃତି

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହି ଅଞ୍ଚଳର ଶିକ୍ଷା ସଂସ୍କୃତି ଓ ମୁଖ୍ୟତଃ ସଂସ୍କୃତ ଭାଷା କାବ୍ୟ, ପୁରାଣ, ଉପନିଷଦ ଉପରେ ନିର୍ଭର ଥିବାର ଜଣାଯାଏ । ତାଳପତ୍ର ପୋଥିରେ ସନ୍ନିବେଶିତ ଏହି ସଂସ୍କୃତ କାବ୍ୟ, ବ୍ୟାକରଣ, ଓ ପୁରାଣ ସାମାନ୍ୟ କେତେକ ଗୁଣୀ ଜ୍ଞାନୀ ମୁଖ୍ୟତଃ ବ୍ରାହ୍ମଣ ପୁରୋହିତଙ୍କ ଭିତରେ ସୀମିତ ଥିବାର ମନେହୁଏ । ବଡ଼ ବଡ଼ ଧନୀ ଜମିଦାର ତଥା ରାଜା ମାନଙ୍କ ପୃଷ୍ଠପୋଷକତାରେ କେତେକ ବ୍ରାହ୍ମଣ ଶାସନ ମାନଙ୍କରେ ଗୁରୁକୂଳ ଆଶ୍ରମ ଭଳି ସଂସ୍କୃତ ପଣ୍ଡିତମାନଙ୍କ ଦ୍ୱାରା ଶିକ୍ଷା ଦିଆଯାଉଥିଲା । ଖଡ଼ି ଧରି ମାଟି ମଣ୍ଡପରେ ଅକ୍ଷର ଶିକ୍ଷା ଦିଆଯିବାପରେ କୁମ୍ଭାର ସମ୍ଭବ, ରଘୁବଂଶ, ପୁରୋହିତ ସର୍ବସ୍ୱ ଭଳି କେତେକ ସଂସ୍କୃତ ଭାଷାରେ ଲିଖିତ ପୋଥି ପାଠ କରାଯାଉଥିଲା । ଯେଉଁ ମାନେ ଗୀତା, କୁମାର ସମ୍ଭବ, ରଘୁବଂଶ, ପୁରୋହିତ ସର୍ବସ୍ୱ ଉପରେ ପାରଙ୍ଗମତା ଅର୍ଜନ କରିପାରୁଥିଲେ ସେହିମାନଙ୍କୁ ଆଚାର୍ଯ୍ୟ ରୂପେ ପରିଗଣିତ କରାଯାଉଥିଲା ।

ମାଟି ପିଣ୍ଡାରେ ଖଡ଼ିଧରି ଅକ୍ଷର ଶିକ୍ଷା ଦେଉଥିବା କେତେକ ଗ୍ରାମମାନଙ୍କରେ ବ୍ୟକ୍ତିମାନଙ୍କୁ ମାଟିଅବଧାନ ମଧ୍ୟ କୁହାଯାଉଥିଲା । ଏହି ଅବଧାନମାନେ ପିଲାମାନଙ୍କୁ ଖଡ଼ି ଛୁଆଁଇ ପାଠ ଆରମ୍ଭ କରୁଥିଲେ । ସେଥିପାଇଁ ବିଶେଷତଃ ବ୍ରାହ୍ମଣ ପରିବାରର ପିଲାମାନଙ୍କର ଏକ ଖଡ଼ିଛୁଆଁ ବିଧି ପ୍ରବର୍ତ୍ତିତ ଥିଲା । ଅବଧାନମାନଙ୍କୁ ଛାତ୍ରମାନେ ଛଞ୍ଚା ଦେବାର ବିଧି ଥିଲା । ଏହି ଛଞ୍ଚାରେ ଚାଉଳ, ଡ଼ାଲି ପରିବା ଓ ଘୃତ ଅବଧାନଙ୍କ ପାଇଁ ଛାତ୍ରମାନେ ଦେଉଥିଲେ । ଏହି ଚାଟଶାଳୀ ଗୁଡ଼ିକ ବିଶିଷ୍ଟ ବିଶିଷ୍ଟ ଗାଁ କିମ୍ବା ମଣ୍ଡପମାନଙ୍କରେ ଅନୁଷ୍ଠିତ ହେଉଥିଲା ।

ଚାଟଶାଳୀ ପାଠ ପରେ ଉଚ୍ଚତର ଶିକ୍ଷା ପାଇଁ ବିଶିଷ୍ଟ ବିଶିଷ୍ଟ ବ୍ରାହ୍ମଣ ଶାସନମାନଙ୍କରେ ସଂସ୍କୃତ ପଣ୍ଡିତମାନଙ୍କ ( ଆଚାର୍ଯ୍ୟ ) ଦ୍ୱାରା ଟୋଲ ସବୁ କାର୍ଯ୍ୟ କରୁଥିଲା । ଏହି ଟୋଲମାନଙ୍କରେ ଶିକ୍ଷାପ୍ରାପ୍ତ ଛାତ୍ରମାନେ ସଂସ୍କୃତ ବ୍ୟାକରଣ, କାବ୍ୟ, ଶ୍ଳୋକ, ପୁରାଣ ଉପନିଷଦ, ପୁରୋହିତ ସର୍ବସ୍ୱ ପ୍ରଭୃତି ଶିକ୍ଷାପ୍ରାପ୍ତ ହେବାପରେ ପଣ୍ଡିତ ରୂପେ ବାହାରୁଥିଲେ ।

ଏହି ଶିକ୍ଷାପ୍ରାପ୍ତ ପଣ୍ଡିତ ମାନେ ତତ୍କାଳୀନ ରାଜଦରବାର କିମ୍ବା ବିଶିଷ୍ଟ ଧନୀ ଜମିଦାରମାନଙ୍କ ପଣ୍ଡିତ ସଭାମାନଙ୍କରେ ନିଜ ନିଜର ଜ୍ଞାନର ପରୀକ୍ଷା ଦେଇ ସମ୍ମାନ ପ୍ରାପ୍ତ ହେଉଥିଲେ । ଯେଉଁମାନେ ସମ୍ମାନିତ ହୋଇପାରୁଥିଲେ ସେମାନଙ୍କୁ ସ୍ୱର୍ଣ୍ଣକୁଣ୍ଡଳ ପିନ୍ଧିବାକୁ ଦିଆଯାଉଥିଲା ଓ ସେମାନେ କୁଣ୍ଡଳୀ ପଣ୍ଡିତ ରୂପେ ସମ୍ମାନ ପାଉଥିଲେ ।

ରାଜଦରବାର ମାନଙ୍କରେ ଯେଉଁମାନେ ବିଶେଷ ଉତ୍କର୍ଷ ପ୍ରତିପାଦନ କରିପାରୁଥିଲେ। ସେମାନଙ୍କୁ ରାଜଗୁରୁ, ପ୍ରହରାଜ, ଅଷ୍ଟାବଧାନୀ ତଥା କବିଚନ୍ଦ୍ର ଉପାଧି ଦିଆଯାଉଥିଲା।

ତତ୍କାଳୀନ ଏହି ଅଞ୍ଚଳରେ ବିକଶିତ ଲାଭକରିଥିବା କୁମାରାଙ୍ଗର ସଂସ୍କୃତ ଶିକ୍ଷା କେନ୍ଦ୍ର(ଟୋଲ) ଅତ୍ୟନ୍ତ ଖାତି ଲାଭ କରିଥିଲା। ଏଥିରେ କବିଚନ୍ଦ୍ର ଦାଶରଥି ଷଡ଼ଙ୍ଗୀ ସଂସ୍କୃତ ଶିକ୍ଷାଦାନ ଦେଉଥିଲେ। ବାଣପୁରର ବିଭିନ୍ନ ଅଞ୍ଚଳରୁ ବ୍ରାହ୍ମଣ ଛାତ୍ରମାନେ ଆସି ଏଠି ବିଦ୍ୟାଧ୍ୟୟନ କରୁଥିଲେ। କୋରାପୁଟର ଜୟପୁର ରାଜଦରବାରରେ ତାଙ୍କର ସ୍ୱହସ୍ତ ଲିଖିତ ତୁଳସୀ ରାମାୟଣ ପାଠ କରାଯାଇ ତାଙ୍କର ଭୂୟସୀ ପ୍ରଶଂସା କରାଯିବା ସଂଗେ ସଂଗେ ତାଙ୍କୁ କବିଚନ୍ଦ୍ର ଉପାଧି ଦିଆଯାଇଥିଲା। ଦୁର୍ଭାଗ୍ୟର ବିଷୟ ତାଙ୍କର ସେହି ପ୍ରସିଦ୍ଧ ତୁଳସୀ ରାମାୟଣ (ତଳପତ୍ର ପୋଥି) କୌଣସି କାରଣରୁ ତାଙ୍କର ପରବର୍ତ୍ତୀ ଦାୟାଦ ଶ୍ରୀଯୁକ୍ତ ସତ୍ୟବାଦୀ ଷଡ଼ଙ୍ଗୀ ହସ୍ତାନ୍ତର କରି ଆଜି ଏ ପରିଣତ ବୟସରେ ଘୋର ଅନୁତାପ କରୁଥିବାର ସମସ୍ତେ ଜାଣନ୍ତି ।

କବିଚନ୍ଦ୍ରଙ୍କ ପରେ ସେହି ଗ୍ରାମର ଆଉଜଣେ ପଣ୍ଡିତ ଗଙ୍ଗାଧର ଷଡ଼ଙ୍ଗୀ ଏହି କୁମାରାଙ୍ଗର ସଂସ୍କୃତ ଟୋଲ୍ ର ପରବର୍ତ୍ତୀ ଆଚାର୍ଯ୍ୟ ହୋଇ ଅନେକ ଛାତ୍ରଙ୍କୁ ଶିକ୍ଷାଦାନ କରିଥିଲେ ।

୧୮୫୦ ପରେ ସାମାନ୍ୟ ସରକାରୀ ଅନୁଦାନରେ କେତୋଟି ସଂସ୍କୃତ ଟୋଲ୍ ଖୋଲିଥିଲା । ସେଗୁଡ଼ିକ ମଧ୍ୟରେ ବାଣପୁରର ଗୋପାଳପୁର, ବ୍ରାହ୍ମଣ କୁଶଡ଼ିହ ଠାରେ ଦୁଇଟି ଟୋଲ୍ ଥବାର ପ୍ରମାଣିତ । ବ୍ରାହ୍ମଣ କୁଶଡ଼ିହ ଟୋଲ୍ ରେ ଅଲାଇଡ଼ିହ ଉପେନ୍ଦ୍ର ପାତୀ ସଂସ୍କୃତ ଶିକ୍ଷାଦାନ କରୁଥିଲେ । ଗୋପାଳପୁର ଟୋଲ୍ ରେ ଥିବା ପଣ୍ଡିତ ନୀଳକଣ୍ଠ ମହାପାତ୍ର ଓ ତାଙ୍କ ପୂର୍ବରୁ ପଣ୍ଡିତ ଗଙ୍ଗାଧର ଷଡ଼ଙ୍ଗୀ ଶିକ୍ଷାଦାନ ଦେଉଥିବାର ଅନେକ କୁହନ୍ତି ।

# ବାଣପୁରରେ ଦୁର୍ଭିକ୍ଷର କରାଳଛାୟା

୧୯୨୦ ମସିହାରେ ବର୍ଷାର ଘୋର ଅଭାବ ଯୋଗୁଁ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଲା । ଖାଦ୍ୟାଭାବ ଯୋଗୁଁ ଲୋକେ ଭୋକ-ଉପାସରେ ଦହଗଞ୍ଜ ହେଲେ ଓ ଖାଦ୍ୟାଭାବଜନିତ ରୋଗ ବିଶେଷତଃ ଝାଡ଼ାବାନ୍ତି ( ବିସୂଚିକା ) ରୋଗରେ ବହୁସଂଖ୍ୟାରେ ମୃତ୍ୟୁବରଣ କଲେ । କୂଅପୋଖରୀ ଶୁଖିଯିବାରୁ ଗାଈଗୋରୁ ମାନେ ପାଣି ନପାଇ ମଧ୍ୟ ଅକାଳ ମୃତ୍ୟୁ ହେଲା । ସେହି ସମୟରେ ଇଂରେଜ ସରକାରଙ୍କ ପକ୍ଷରୁ ବିଭିନ୍ନ ଜାଗାରେ ଅନ୍ନଛତ୍ର ଖୋଲାଯାଇ ବର୍ମାରୁ ଆସିଥିବା ଚାଉଳ ଯୋଗାଇଦିଆଯାଉଥିଲା । କିନ୍ତୁ ଅନ୍ଧବିଶ୍ୱାସରେ ପୂର୍ଣ୍ଣ ଏହି ଅଞ୍ଚଳର କେତେକ ଗାଁରେ ପେଟ ବିକଳରେ ଅନ୍ନଛତ୍ର ନେଉଥିବା ଲୋକଙ୍କୁ ବାସନ୍ଦ କରାଗଲା । ଏପରିକି ବିହନ ନପାଇବାରୁ ପରବର୍ତ୍ତୀ ବର୍ଷ ମଧ୍ୟ ଦୁର୍ଭୀକ୍ଷ ଲାଗି ରହିଲା । ଏଣୁ ତୃତୀୟ ବର୍ଷ ଧାନ ରଖୁଥିବା ପାଳର ପୁଡୁଗ ନଡ଼ାକୁ ବିଲରେ ବୁଣି ଲୋକେ ବିହନ ଯୋଗାଡ଼ କରିଥିବାର ଅନେକ ମତ ଦିଅନ୍ତି । ଏହି ଦୁର୍ଭିକ୍ଷ ଓ ମହାମାରୀ ବେଳେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଗୋପବନ୍ଧୁଙ୍କ ସହକର୍ମୀମାନେ ଗାଁ ଗାଁରେ ବୁଲି ଦୁଃସ୍ଥ ଲୋକମାନଙ୍କ ସେବା କରିଥିଲେ ।

# ବାଣପୁରରେ ଆଧୁନିକ ଶିକ୍ଷାର କ୍ରମବିକାଶ

ଓଡ଼ିଆ ଭାଷାରେ ଶିକ୍ଷାଦାନ ପାଇଁ ବାରମ୍ବାର ଦାବି ହେବା ପରେ ମଧ୍ୟ ବଙ୍ଗାଳୀମାନଙ୍କ ପ୍ରରୋଚନାରେ ଇଂରେଜ ସରକାର କୌଣସି ପଦକ୍ଷେପ ନେଉନଥିଲେ । ୧୮୩୭ ମସିହାରେ ବୋର୍ଡ ଅଫ ରେଭେନ୍ୟୁ କମିଶନର ରକେଟ୍ସ ସାହେବ ପ୍ରଥମେ ଓଡ଼ିଆମାନଙ୍କ ଏହି ଦାବିକୁ ହୃଦୟଙ୍ଗମ କରି ଓଡ଼ିଶାରେ କେତୋଟି ଓଡ଼ିଆ ମାଧ୍ୟମ ବିଦ୍ୟାଳୟ ଖୋଲିବାକୁ ରିପୋର୍ଟ ଦେଲେ । କିନ୍ତୁ ୧୮୪୧ ରେ ବଂଗାଳୀମାନଙ୍କ କୂଟବୁଦ୍ଧିର ଶିକାର ହୋଇ ପୁନର୍ବାର ତତ୍କାଳୀନ ରେଭେନ୍ୟୁ ବୋର୍ଡ ରିପୋର୍ଟ ଦେଲେ ଯେ, ଯେହେତୁ ପ୍ରତ୍ୟେକ କୋର୍ଟ କଚେରୀରେ ଶତକଡ଼ା ୯୦ ଭାଗ ବଙ୍ଗାଳୀ ଭାଷା ପ୍ରଚଳିତ ଏଣୁ ଓଡ଼ିଆ ଭାଷା ପ୍ରଚଳନର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ଓଡ଼ିଆଙ୍କ ସୌଭାଗ୍ୟରୁ ସେତବେଳର କମିଶନର ମିଲ୍ସ୍ ସାହେବ ଏହି ରିପୋର୍ଟକୁ ଖାରଜ କରି ଓଡ଼ିଆ ଭାଷାକୁ ପ୍ରଥମେ ବର୍ଦ୍ଧମାନ ଓ କଟକ କୋର୍ଟ କଚେରୀରେ ୧୮୪୨ ମସିହାରେ ପ୍ରଚଳନ କଲେ ।

ସେହିଦିନଠାରୁ ଓଡ଼ିଆ ଭାଷାର ଭବିଷ୍ୟତ ଆରମ୍ଭ ହେଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହିଭଳି ବାଦବିସମ୍ବାଦ ମଧ୍ୟରେ ୧୮୬୫ ମସିହା ପର୍ଯ୍ୟନ୍ତ କୌଣସି ସରକାରୀ ସ୍ୱୀକୃତି ପ୍ରାପ୍ତ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଏ ଅଞ୍ଚଳରେ ହୋଇନଥିଲା । ମାତ୍ର ହାତଗଣତି କେତୋଟି ଚାଟଶାଳୀରେ ମାଟି ଅବଧାନମାନଙ୍କ ଦ୍ୱାରା ଓଡ଼ିଆ ଶିକ୍ଷା ଦିଆଯାଉଥିଲା । କୋଇଲି, ଗୋପୀଭାଷା, ଛାନ୍ଦ ଚୌପଦୀ ପ୍ରଭୃତି ସହ ଓଡ଼ିଆ ଅକ୍ଷର ଶିକ୍ଷା ଦିଆଯାଉଥିଲା । ଭୀମପୁର ଚାଟଶାଳୀର ଅବଧାନ ଚଣ୍ଡ ସେନାପତି ଓ ପରେ ବେବର୍ତ୍ତା ପଟ୍ଟନାୟକ ଅବଧାନ ହିସାବରେ ବହୁ ଖ୍ୟାତି ଅର୍ଜନ କରିଥିଲେ ।

ବାଣପୁରରେ ଶିକ୍ଷାର ବିକାଶ ପାଇଁ ପ୍ରଥମେ ୧୮୭୫ ମସିହାରେ ଏ ଅଞ୍ଚଳରେ ଭୀମପୁର ଗ୍ରାମରେ ସରକାରୀ ସ୍ୱୀକୃତି ପ୍ରାପ୍ତ ଏକ ପ୍ରାଥମିକ ତଥା ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଖୋଲିଲା। ପ୍ରବାଦ ଅଛି, ପଣ୍ଡିତ ଗୋଦାବରୀଶ ମିଶ୍ର ଏହି ବିଦ୍ୟାଳୟରେ ତାଙ୍କର ପ୍ରାଥମିକ ଶିକ୍ଷା ସମାପ୍ତି କରିଥିଲେ। ଏହା ପରେ, ପରେ ୧୮୮୫ ମସିହାରେ ଏହି ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ଏକ ଭର୍ଣ୍ଣାକୁଲାର ବିଦ୍ୟାଳୟରେ ପରିଣତ କରାଯାଇ ବାଣପୁର ଉଠାଇ ଅଣାଗଲା। ଶ୍ରୀଯୁକ୍ତ ଲିଙ୍ଗରାଜ ପଟ୍ଟଯୋଷୀ ଏହାର ପ୍ରତିଷ୍ଠାତା ସମ୍ପାଦକ ଥିଲେ। ଏଣୁ ୧୮୮୫ ମସିହାରୁ ପ୍ରକୃତ ପକ୍ଷେ ଆଧୁନିକ ଶିକ୍ଷାର ମୂଳପିଣ୍ଡ ରୂପେ ଆଜିର ବାଣପୁର ମାଇନର୍ ସ୍କୁଲ ଏ ମାଟିର ବକ୍ଷରେ ଏକ ବିରାଟ ପରିବର୍ତ୍ତନ ଆଣିଦେଲା। ଏହି ଭର୍ଣ୍ଣାକୁଲାର ସ୍କୁଲରେ ତତ୍କାଳୀନ ଅନେକ ସ୍ୱଚ୍ଛଳ ପରିବାରର ପିଲାମାନେ ଶିକ୍ଷାପ୍ରାପ୍ତ ହୋଇ ପ୍ରଥମ ପିଡିର ପ୍ରାଥମିକ ଶିକ୍ଷକ ରୂପେ ଶିକ୍ଷାର ବିସ୍ତାର କରିଚାଲିଲେ। ହନ୍ତୁଆଡ଼ରେ ଶ୍ରୀଯୁକ୍ତ ଗୌରହରି ପଟ୍ଟନାୟକ, କୁମାରାଙ୍ଗର ସୋମନାଥ ମହାପାତ୍ର, ବାସୁଦେବ ମହାପାତ୍ର, ବାବାଜୀ ମହାପାତ୍ର, ଦୁଲଣୀର ନାରାୟଣ ମିଶ୍ର, ଚୋରପାଣି ମିଶ୍ର, ତୁଳସୀଦେଇପୁରର ଜଗନ୍ନାଥ ହୋତା, ଅଚ୍ୟୁତାରାଜପୁରର ବିଦ୍ୟାଧର ମିଶ୍ର ପ୍ରଭୃତି ଏଥିରେ ଅଗ୍ରଣୀ ଥିଲେ। ଏହିମାନେ ହିଁ ବାଣପୁରରେ ଶିକ୍ଷାର ଆଲୋକବର୍ତ୍ତିକା ଜଳାଇ ଆଜିର ଆଧୁନିକତାର ମୂଳଦୁଆ ପକାଇଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ।

ତତ୍କାଳୀନ ବାଣପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ଋଷିପ୍ରତିମ ଶିକ୍ଷକ ବିଶ୍ୱନାଥ ଶତପଥୀ, ଦୀନବନ୍ଧୁ ନରେନ୍ଦ୍ର ସିଂହ ବର୍ମା, ବାମନ ଚରଣ ଦାସ, ବୈଦ୍ୟନାଥ ରଥ ଓ ସହଦେବ ସାହୁ ପ୍ରଭୃତି ପରବର୍ତ୍ତୀ କାଳରେ ଏ ଅଞ୍ଚଳରେ ଶିକ୍ଷାର ବିସ୍ତାର କରାଇବାରେ ଅଗ୍ରଗଣ୍ୟ ଥିଲେ। ସେହିଭଳି କୁମାରାଙ୍ଗର ନୀଳକଣ୍ଠ ରଥ, ଦାଶରଥି ରଥ, ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ର ମଧ୍ୟ ସେମାନଙ୍କୁ ମଧ୍ୟରୁ ଅନ୍ୟତମ।

୧୯୩୦ ମସିହା ପରେ ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସାଧୁ ଉଦ୍ୟମରେ ତତ୍‌କାଳୀନ ବାଣପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ଚାଷଙ୍ଗରାର ଦୀନବନ୍ଧୁ ନରେନ୍ଦ୍ର ସିଂହ ବର୍ମା ଓ ବାଣପୁରର ଲିଙ୍ଗରାଜ ପଟ୍ଟଯୋଷୀ ଏହି ବିଦ୍ୟାଳୟ ପ୍ରତିଷ୍ଠାରେ ମଧ୍ୟ କର୍ଣ୍ଣଧାର ଥିଲେ । ସତ୍ୟବାଦୀର ବନ ବିଦ୍ୟାଳୟ ଢାଞ୍ଚାରେ ଏହି ବିଦ୍ୟାପୀଠ ଗୁରୁକୁଳ ଆଶ୍ରମ ଭଳି କାର୍ଯ୍ୟ କରୁଥିଲା । ଏଥିରେ ଦେବୋପମ ଶିକ୍ଷକମାନେ ଶିକ୍ଷାଦାନ ଦେଇ ଛାତ୍ରମାନଙ୍କୁ ମଣିଷ ଭଳି ମଣିଷ କରି ଗଢୁଥିଲେ । ସେହି ପ୍ରାତଃସ୍ମରଣୀୟ ଶିକ୍ଷକମାନେ ହେଲେ ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ର, ଲକ୍ଷ୍ମୀଧର ଶତପଥୀ, ବିଶ୍ୱନାଥ ଶତପଥୀ, ପଣ୍ଡିତ ନାରାୟଣ ମହାପାତ୍ର, ଯାହାଙ୍କ ଅବଦାନ ଶିକ୍ଷା ଜଗତ ପ୍ରତି ଅନବଦ୍ୟ । ଲୋକେ କୁହନ୍ତି, ଜାତିର ପିତା ମହାତ୍ମାଗାନ୍ଧୀ କୁଆଡ଼େ ଏହିଠାରେ ଦିନେ ଦୁଇଦିନ ପାଇଁ ଶିବିର ସ୍ଥାପନ କରି ବିଭିନ୍ନ ଲୋକମାନଙ୍କ ସହ ପରାମର୍ଶ କରିଥିଲେ । ଏହି ବିଦ୍ୟାଳୟ ତତ୍‌କାଳୀନ ପୁରୀ ଜିଲ୍ଲାର ବହୁଅଞ୍ଚଳର ମେଧାବୀ ଛାତ୍ରମାନଙ୍କୁ ଆଧୁନିକ ଶିକ୍ଷା ଦେଇଥିଲେ ।

ଏହି ମାଇନରସ୍କୁଲର ୧୯୧୬ରେ ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ ଭୁବନେଶ୍ୱରର ଶ୍ରୀ ରଘୁନାଥ ମହାପାତ୍ର, ସାକ୍ଷୀଗୋପାଳ ବନପୁରର ଶ୍ରୀଯୁକ୍ତ ଜଗନ୍ନାଥ ଦାସ ଦ୍ୱିତୀୟ ଶିକ୍ଷକ ଓ କୁମାରାଙ୍ଗର ନୀଳକଣ୍ଠ ରଥ ୨ୟ ପଣ୍ଡିତ ଥିଲେ । ୧୯୧୬ ମସିହାରେ ଏହା ପ୍ରଥମ ବ୍ୟାଚ୍ ଛାତ୍ର ରୂପେ ଅଚ୍ୟୁତରାଜପୁରର ଗଣେଶ୍ୱର ମିଶ୍ର, ବାଣପୁରର ଗଙ୍ଗାଧର ମହାପାତ୍ର, ହରିବନ୍ଧୁ ପରିଡ଼ା, ଭଗବତ ସୁବୁଦ୍ଧି, କୁମାରାଙ୍ଗର ନିଆଁଖୁଣ୍ଟା ଗୋଦାବରୀଶ ମହାପାତ୍ର ଜଗନ୍ନାଥ ମହାପାତ୍ର ( ପରବର୍ତ୍ତୀକାଳରେ ହାଇସ୍କୁଲର ପ୍ରବୀଣ ଶିକ୍ଷକ ) ରୂପେ ଆଖ୍ୟା ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୨୨ ମସିହାରେ ଖୋର୍ଦ୍ଧାର ବିଶ୍ୱନାଥ ଶତପଥୀ ଏହାର ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି ପାଇ କାର୍ଯ୍ୟଭାର ଗ୍ରହଣ କରିବାପରେ ତତ୍କାଳୀନ ଜିଲ୍ଲା

ଇନ୍‌ସପେକ୍ଟର ନନ୍ଦ କିଶୋର ବଳଙ୍କ ପୁତୁରା ଶ୍ରୀଯୁକ୍ତ ଚିନ୍ତାମଣି ଜେନା ଦ୍ୱିତୀୟ ସହକାରୀ ଓ କୁମାରାଙ୍ଗର ନୀଳକଣ୍ଠ ରଥ ହେଡ୍ ପଣ୍ଡିତ ହୋଇଥିଲେ ।

ବାଣପୁରର ଶ୍ରୀଯୁକ୍ତ ଲିଙ୍ଗରାଜ ପଟ୍ଟଯୋଶୀ ୧୯୩୪ ପର୍ଯ୍ୟନ୍ତ ଏହାର ସୁଯୋଗ୍ୟ ସଂପାଦ ରୂପେ କାର୍ଯ୍ୟ କରିଥିଲେ । ଚିନ୍ତାମଣି ଜେନାଙ୍କ ଇଂରାଜୀ ଓ ଇତିହାସ ଅଧ୍ୟାପନା ଓ ନୀଳକଣ୍ଠ ରଥଙ୍କ ସାହିତ୍ୟ ଅଧ୍ୟାପନା ଅତ୍ୟନ୍ତ ଉଚ୍ଚକୋଟିର ଥିବାର ପ୍ରବୀଣ ଶିକ୍ଷାବିତ୍‌ମାନେ ମତ ଦେଇଥାନ୍ତି ।

ତତ୍କାଳୀନ ସରବରାକାର ଓ ଅନ୍ୟାନ୍ୟ ଧନାଢ୍ୟ ବ୍ୟକ୍ତିମାନଙ୍କ ପିଲା ଏହି ବିଦ୍ୟାଳୟର ସାଧାରଣ ପିଲାଙ୍କୁ ଗୋଲାମ୍ ପିଲା ବୋଲି ଥଟ୍ଟା କରୁଥିଲେ । ୧୯୨୩ ମସିହାରେ ଦିନେ ଗୋଦାବରୀଶ ଓ ଗୋପବନ୍ଧୁଙ୍କ ଓଜସ୍ୱିନୀ ବକ୍ତୃତାରେ ଉଦ୍‌ବୁଦ୍ଧ ହୋଇ ବାଣପୁରରେ ବିଦେଶୀ ଲୁଗା ସବୁ ପୋଡ଼ି ଦିଆଯାଇଥିଲା । ଏହାବ୍ୟତୀତ ପଣ୍ଡିତ ଗୋଦାବରୀଶ ମିଶ୍ର ସାମୟିକ ଏହି ବିଦ୍ୟାଳୟକୁ ଆସି ପିଲାମାନଙ୍କ ଦୁଃଖସୁଖ ବୁଝିବା ସଂଗେସଂଗେ ସ୍ୱାଧୀନତା ଆନ୍ଦୋଳନ ପାଇଁ ଡ଼ାକରା ଦେଉଥିଲେ । ଏହିମାଇନର୍ ସ୍କୁଲର ଯେଉଁ କେତେଜଣ ତତ୍କାଳିନ ଛାତ୍ର ଗାଁ ଗାଁ ବୁଲି ଇଂରେଜ ସରକାର ବିରୋଧୀ ଭାଷଣ ଦେଉଥିଲେ ସେମାନେ ହେଲେ ଗୋଦାବରୀଶ ମହାପାତ୍ର, ଗଣେଶ୍ୱର ମିଶ୍ର, ଭାଗବତ ସୁବୁଦ୍ଧି, ଶ୍ୟାମସୁନ୍ଦର ସେନାପତି, ଗଙ୍ଗାଧର ମହାପାତ୍ର, ନୃସିଂହ ସାମନ୍ତସିଂହାର, ପର୍ଶୁରାମ ହରିଚନ୍ଦନ, ବଙ୍କିମଚନ୍ଦ୍ର ପଟ୍ଟଯୋଷୀ, ମାୟାଧର ମାନସିଂହ, ଉଦୟନାଥ ରଥ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଶ୍ରୀଧର ମହାପାତ୍ର, ଅନନ୍ତ ମିଶ୍ର ପ୍ରଭୃତି । ସେଦିନର ଏହି ମେଧାବୀ ଛାତ୍ରମାନେ ପରବର୍ତ୍ତୀ କାଳରେ ଓଡ଼ିଶାର ପ୍ରଖ୍ୟାତ ବ୍ୟକ୍ତି ରୂପେ ପରିଗଣିତ ହୋଇଥିବାର ସମସ୍ତେ ଜାଣନ୍ତି ।

ପଣ୍ଡିତ ଗୋଦାବରୀଶ ଏହି ଅଞ୍ଚଳରେ ସତ୍ୟବାଦୀ ଡାଞ୍ଚାରେ ଏକ ବିଦ୍ୟାଳୟ ଖୋଲିବାର ସ୍ୱପ୍ନ ଦେଖୁଥିଲେ ଓ ସେଥିପାଇଁ ସେ ତତ୍କାଳୀନ ଗଡ଼

ବାଲୁକେଶ୍ୱରଙ୍କ ମନ୍ଦିର ସମୀପରେ ଏକ ବିସ୍ତୀର୍ଣ୍ଣ ଜାଗା ଦେଖି ସେହିଠାରେ ବନବିଦ୍ୟାଳୟ ପ୍ରତିଷ୍ଠା ପାଇଁ ପ୍ରୟାସ ଜାରି ରଖିଥିଲେ । ଏଣୁ ପ୍ରଥମେ ୯.୧.୧୯୩୦ ମସିହାରେ ତତ୍କାଳୀନ ବାଣପୁର ମାଇନର୍ ସ୍କୁଲରେ ଅଷ୍ଟମ ନବମ ଶ୍ରେଣୀ ଖୋଲାଗଲା । ସତ୍ୟବାଦୀରୁ ଉନ୍ନୀତ ଶ୍ରୀଯୁକ୍ତ ବାମନ ଚରଣ ଦାସଙ୍କୁ କଟକ ଜିଲ୍ଲା ବାଗଲପୁରରୁ ଅଣାଇ ଶିକ୍ଷକ ରୂପେ ନିଯୁକ୍ତି ଦିଆଗଲା । ଏହା ୧୯୩୧ ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଏହି ମାଇନର୍ ସ୍କଉଲରେ ପରିଚାଳିତ ହେଉଥିଲା । ସେତେବେଳେ ଏହି ଅର୍ଦ୍ଧ ବିକଶିତ ସ୍କୁଲର ସଂପାଦକ ଥିଲେ ବାଣପୁରର ଭାଗବତ ସୁବୁଦ୍ଧି ଓ ସହସଂପାଦକ ଥିଲେ ଭୀମପୁରର ଶ୍ରୀଯୁକ୍ତ ବଳଭଦ୍ର ମଙ୍ଗରାଜ ମହାପାତ୍ର । ବାଣପୁର ତତ୍କାଳୀନ ତହସିଲଦାର ଶ୍ରୀଯୁକ୍ତ ଗୌରକିଶୋର ଦାସ ଥିଲେ ଏହାର ସଭାପତି । ପରବର୍ତ୍ତୀ ବର୍ଷ ଏହାର ସଂପାଦକ ହେଲେ ନିଆଁଖୁଣ୍ଟା ଗୋଦାବରୀଶ ମହାପାତ୍ର ।

ଗୋଦାବରୀଶଙ୍କ ଏହି ସ୍ୱପ୍ନକୁ ଧ୍ୱଂସ କରିବାପାଇଁ ତତ୍କାଳୀନ ଇଂରାଜୀ ସାହେବ ଇନ୍‌ସପେକ୍ଟର ଏଚ୍.ଡ଼ି.ପି ସରକାରଙ୍କୁ ଏହି ପ୍ରସ୍ତାବିତ ସ୍ଥାନ ବିରୋଧରେ ଲେଖି ଜଣାଇଥିଲେ ମଧ୍ୟ ପଣ୍ଡିତ ଗୋଦାବରୀଶ ମିଶ୍ର ନିଜ ଉଦ୍ୟମରେ ତତ୍କାଳୀନ ଧନୀ ଓ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କୁ ଠାରୁ ଦାନ ଆଣି ଉପରୋକ୍ତ ସ୍ଥାନରେ ଗୃହ ନିର୍ମାଣ ଆରମ୍ଭ କରିଥିଲେ । ଯେଉଁ ବଦାନ୍ୟ ବ୍ୟକ୍ତି ମାନେ ଏହି ବିଦ୍ୟାଳୟ ପାଇଁ ପ୍ରଥମେ ଦାନ ଦେଇଥିଲେ ସେମାନେ ହେଲେ ବାଣପୁରର ରାମକୃଷ୍ଣ ମିଶ୍ର, ପୁରୁଷୋତ୍ତମ ମିଶ୍ର, ତୁମୁରାପୁଟର ପୁରୁଷୋତ୍ତମ ମହାପାତ୍ର । ଏହି ସମୟରେ ସ୍ୱୟଂ ପଣ୍ଡିତ ଗୋଦାବରୀଶ ମିଶ୍ର ଶିକ୍ଷକ ବାମନ ଚରଣ ଦାସ, ବିଶ୍ୱନାଥ ଶତପଥୀ ସୁଦର୍ଶନ ପାଣିଗ୍ରାହୀ ଓ ଗୋଦାବରୀଶ ମହାପାତ୍ରଙ୍କ ସାଙ୍ଗରେ ନେଇ ଗାଁ, ଗାଁ ବୁଲିଥିଲେ । ଚାନ୍ଦା ସଂଗ୍ରହ କରି କେତେବଖରା ସ୍କୁଲ ଘର ମଧ୍ୟ ନିର୍ମାଣ ସରିଥିଲା । ୧୯୩୩ ମସିହାରେ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ବିହାର ଓଡ଼ିଶା

ଆସେମ୍ବ୍ଲିର ସଦସ୍ୟ ଥିବାରୁ ତତ୍କାଳୀନ ଡ଼ି.ପି.ଆଇ ଜି.ଇ ଫକ୍ସଙ୍କୁ ଏହି ବିବାଦୀୟ ସ୍ଥାନ ପରିଦର୍ଶନ କରି ତଦନ୍ତ କରିବାକୁ ଅନୁରୋଧ କରିବାରୁ ଫକ୍ସ ସାହେବ ନିଜେ ପଦବ୍ରଜରେ ଏହି ଅଞ୍ଚଳ ପରିଦର୍ଶନ କରି ଫେରିଥିଲେ । ପରିଶେଷରେ ଫକ୍ସ ସାହେବଙ୍କ ପରାମର୍ଶରେ ଏହାକୁ ସରକାର ଗ୍ରହଣ କରିଥିବାରୁ ୧୯୩୫ ମସିହାରେ ପ୍ରଥମ ବ୍ୟାଚ୍ ଛାତ୍ର ବାଣପୁର ହାଇସ୍କୁଲ ନାଁରେ ପରୀକ୍ଷା ଦେଇଥିଲେ ମଧ୍ୟ ଉପରୋକ୍ତ ବିବାଦୀୟ ପରିସ୍ଥିତି ଯୋଗୁଁ ୧୯୩୩ ଓ ୩୪ ମସିହାରେ ବିଦ୍ୟାଳୟର ପିଲାମାନେ ଓଳସିଂହ ହାଇସ୍କୁଲ ମାଧ୍ୟମରେ ପରୀକ୍ଷା ଦେଇଥିଲେ । ଚାଷଙ୍ଗରାର ଦୀନବନ୍ଧୁ ନରେନ୍ଦ୍ର ସିଂହ ବର୍ମା ପଣ୍ଡିତ ମିଶ୍ରଙ୍କ ସହ ସାମିଲ୍ ହୋଇ ଏହି ବିଦ୍ୟାଳୟ ନିର୍ମାଣ ପାଇଁ ଲାଗିପଡ଼ିଥିଲେ । ସେ ମଧ୍ୟ ବିଦ୍ୟାଳୟରେ ଇଂରାଜୀ ଓ ଇତିହାସ ପଢାଉଥିବାର କେତେକ ପୁରାତନ ଛାତ୍ର କୁହନ୍ତି ।

ବିଦ୍ୟାଳୟର ମୁଖପତ୍ର ଥିଲା ତତ୍କାଳୀନ ସାହିତ୍ୟ ସଂସ୍କୃତିର ଏକ ଅନବଦ୍ୟ ପ୍ରତୀକ । ସାରଗର୍ଭକ ଲେଖାଗୁଡ଼ିକ ଭିତରେ ତତ୍କାଳୀନ ସାମାଜିକ ସଂସ୍କୃତି ଓ ସରଳ ନିରାଡ଼ମ୍ବର ଜୀବନଧାରା ପରିଷ୍କାର ଭାବେ ଫୁଟି ଉଠୁଥିଲା । ସେତେବେଳର ଛାତ୍ର ଓ ଆଜି ରାଜ୍ୟର ସୁଉଚ୍ଚ ଡ଼ିଗ୍ରୀଧାରୀ ପ୍ରଶାସକ, ଶିକ୍ଷାବିତ୍‌ମାନଙ୍କ ଲେଖା ଏହି ପତ୍ରିକାରେ ପ୍ରକାଶିତ ହୋଇ ପ୍ରଶଂସିତ ହେଉଥିଲା ।

# ତତ୍କାଳୀନ ବାଣପୁରର ବିଶିଷ୍ଟ ବ୍ୟକ୍ତି

ଏ ଅଞ୍ଚଳର ଲୋକମାନେ ସେତେବେଳେ ଅତ୍ୟନ୍ତ ଧର୍ମଭୀରୁ ଥିଲେ ଓ ଦେବୀ ଭଗବତୀଙ୍କ ଉପରେ ସେମାନଙ୍କର ଅଗାଧ ବିଶ୍ୱାସ ଥିଲା । ପ୍ରତ୍ୟେକ ଲୋକ ଆପଦ ବିପଦବେଳେ ଭଗବତୀଙ୍କୁ ବୋଦା ବଳି ଯାଚୁଥିଲେ । ତତ୍କାଳୀନ ତନ୍ତ୍ରପୂଜା, ବୈଦିକ ପୂଜା ପ୍ରଭୃତିରେ ପାରଦର୍ଶିତା ଲାଭ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଅଚ୍ୟୁତରାଜପୁରର ଯୋଗେନ୍ଦ୍ର ଅଷ୍ଟବଧାନୀ ଅତ୍ୟନ୍ତ ପ୍ରସିଦ୍ଧ ଥିଲେ । ବନାରସ ( କାଶୀ ) ରେ ୧୪ବର୍ଷ ବିଦ୍ୟାଅଧ୍ୟୟନ ଓ କର୍ମରତ ହୋଇ ସେ ଅଚ୍ୟୁତରାଜପୁରରେ ଅବସ୍ଥାନ କରୁଥିଲେ । ପ୍ରବାଦ ଅଛି ସେ ନିକଟସ୍ଥ ଉତ୍ତରାୟଣୀ ପୀଠରେ ବଗଳା ମନ୍ତ୍ର ଜପି କଳାହାଣ୍ଡି ରାଜାଙ୍କର ଅଶେଷ କ୍ଷତି ସାଧନ କରିଥିଲେ । ଜୀବନର ଅନ୍ତିମ କାଳରେ ସେ ଜଣେ ହରଦ୍ୱାର ସାଧୁଙ୍କ ଠାରୁ ସନ୍ନ୍ୟାସ ଦୀକ୍ଷା ନେବାପରେ ମୃତ୍ୟୁବରଣ କରିଥିଲେ । ସେ ମଲାପରେ କୁଆଡ଼େ ୩ଜଣ ସ୍ତ୍ରୀ ଲୋକ ହସିବାକୁ ଲାଗିଲେ ଓ ଘରର ବଗଳା ମୂର୍ତ୍ତି ବିସର୍ଜନ ନକଲା ପର୍ଯ୍ୟନ୍ତ ସେ ହସ ବନ୍ଦ ହୋଇନଥିଲା । ସେହିଭଳି ଅଷ୍ଟାବଧାନୀଙ୍କ ଅନେକ ଆଲୌକିକ କର୍ମ ଆଜି ମଧ୍ୟ ଲୋକମୁଖରେ ପ୍ରଚାରିତ । ୧୯୦୧ ମସିହାରେ ରେଳଗାଡ଼ିକୁ କାଳୀଙ୍କ ଚଳନ୍ତି ପ୍ରତିମା କହି ସେ ପୂଜା କରିଥିବା ଅନେକ କୁହନ୍ତି । ଫଳରେ କିଛିଦିନ ପାଇଁ ଲୋକେ ରେଳଯାତ୍ରା କରିବା ପାଇଁ ଭୟ କରୁଥିଲେ । ସେହିଭଳି ଭଗବତୀଙ୍କ ପୂଜା କର୍ମ ପାଇଁ ପୁରୀବୀର ହରେକୃଷ୍ଣ ପୁରରୁ ଅଚ୍ୟୁତରାଜପୁରର ସ୍ୱର୍ଗତ ଆଡ଼ଭୋକେଟ ହରିହର ମହାପାତ୍ରଙ୍କର ଜେଜେବାପା ଆସିଥିବାର ଲୋକେ କୁହନ୍ତି ।

ବଙ୍କାଡ଼ର ଶେଷ ରାଜାମାନେ ରାଜଦରବାରପାଇଁ ଏକ ଜ୍ୟୋତିଷ ନିଯୁକ୍ତି କରିବାକୁ ମନସ୍ଥ କରି ପୁରୀର ଦନେଇ ବ୍ରହ୍ମପୁରର ଦୀନବନ୍ଧୁ ପଟ୍ଟଯୋଷୀଙ୍କୁ ଅଣାଇ ବଙ୍କାଡ଼ ରାଜ୍ୟର ପଟ୍ଟଜ୍ୟୋତିଷ ରୂପେ ନିଯୁକ୍ତି

ଦେଇଥିଲେ । ତାଙ୍କୁ ଆଜିର ପାଟପୁର ଶାସନରେ ଜମିବାଡ଼ି ଦେଇ ରଖାଇଥିଲେ । ଆଜି ମଧ୍ୟ ପାଟପୁର ଶାସନର ପ୍ରଥମ ହକରା ତାଙ୍କର ବଂଶଧର ମାନେ ପାଆନ୍ତି । ବଙ୍କାଡ଼ ରାଜାଙ୍କ ପତନ ପରେ ତାଙ୍କ ଯଜ୍ଞ ଓ ପୂଜାକର୍ମରେ ଅଭିଭୂତ ହୋଇ ତତ୍କାଳୀନ ବକ୍ସି ତାଙ୍କୁ ବାଣପୁରରେ ଜାଗାବାଡ଼ି ଦେଇ ଭଗବତୀଙ୍କ ସେବା ପୂଜାରେ ସାହାଯ୍ୟ କରିବା ପାଇଁ ନିୟୋଜିତ କରିଥିଲେ । ତାଙ୍କର ପୁତ୍ର ଲିଙ୍ଗରାଜ ପଞ୍ଚଯୋଷୀ ପରବର୍ତ୍ତୀ କାଳରେ ବାଣପୁରର ପ୍ରଥମ ହୋମିଓପାଥିକ ଡ଼ାକ୍ତର ହିସାବରେ ପ୍ରଖ୍ୟାତ ଥିଲେ ଓ ବାଣପୁର ମାଇନର ସ୍କୁଲ ପ୍ରତିଷ୍ଠାତା ସଂପାଦକ ଥିଲେ ।

# ପ୍ରଶାସନିକ ବ୍ୟବସ୍ଥା

ଅଷ୍ଟାଦଶ ଶତାବ୍ଦୀର ଶେଷ ଓ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ବାଣପୁର ଇଂରେଜ ଶାସନାଧୀନ ହେଲା । ସେତେବେଳକୁ ବଙ୍କାଡ଼ ରାଜାଙ୍କ ଅଧୀନରେ ଥିବା ବିଭିନ୍ନ ଗଡ଼ର ଗଡ଼ପତି ଓ ଦଳବେହେରାମାନଙ୍କ ମାଧ୍ୟମରେ ଶାସନ କାର୍ଯ୍ୟ ଚଳୁଥିବାର ଅନୁମିତ । ଏହି ଗଡ଼ପତି ବା ଦଳବେହେରାମାନେ ଜମିଦାର ରୂପେ ମଧ୍ୟ ପରିଗଣିତ ହେଉଥିଲେ । ଭାଟପଡ଼ା, ଅରାଙ୍ଗ (ଚମ୍ପାଗଡ଼), ଭୀମପୁର, ଭକାଗଡ଼, ସୋରଣ ଗଡ଼, ଛତ୍ରଗଡ଼, କୁହୁଡ଼ିଗଡ଼ର ତତ୍କାଳୀନ ଜମିଦାରମାନେ ମୁଖ୍ୟତଃ ଗଡ଼ପତି ବା ଦଳବେହେରା ରୂପେ ପରିଚିତ ଥିଲେ । ଏହିମାନେ ପ୍ରଜାମାନଙ୍କଠାରୁ ଖଜଣା ଅସୁଲ କରିବା ଓ ଶାନ୍ତି ପ୍ରତିଷ୍ଠା କରିବାର ଦାୟିତ୍ୱ ନେଉଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ଇଂରେଜ ସରକାର କେତେକ ସରବରାକାର ଓ ଦଫାଦାର ନିଯୁକ୍ତି କରି ଏହିମାନଙ୍କ ପ୍ରତିପତ୍ତିକୁ କମାଇ ଦେଇଥିବାର ପ୍ରମାଣିତ । ବୋଧହୁଏ ଉପରୋକ୍ତ ଜମିଦାରମାନେ ଇଂରେଜ ସରକାରଙ୍କୁ ଯଥୋଚିତ ସମ୍ମାନ ଦେଇପାରିନଥିବାରୁ ଊନବିଂଶ ଶତାବ୍ଦୀର ଅର୍ଦ୍ଧଭାଗରେ ଜମି, ଜମା ଆଇନ୍ ପ୍ରବର୍ତ୍ତନ ଓ ଦାଖଲଖାରଜ କରାଇ ପ୍ରଜାମାନଙ୍କୁ ଅଧିକାର ଦେଲେ ଓ ସରବରାକାର ମାନଙ୍କୁ ନିଯୁକ୍ତି କରି ଖଜଣା ଅସୁଲ କରିଥିଲେ । ଏବେ ମଧ୍ୟ ସେମାନଙ୍କ ବଂଶଧର ମାନଙ୍କୁ ସରବରାକାର ଘରର ପୁଅ ବୋଲି ଲୋକେ କୁହନ୍ତି । ଏହି ସରବରାକାର ମାନଙ୍କ ମଧ୍ୟରେ ବାଣପୁରର ବାଲିଡ଼ିହର ଦୟାନିଧି ପଟ୍ଟନାୟକ, ଚକ୍ର ବଡ଼ଜେନା, ସରଳାପଦରର ରାଉତରାୟ ପରିବାର, ଇଞ୍ଜନପୁର ପଟ୍ଟନାୟକ ପରିବାର, ଭୀମପୁରର ପଟ୍ଟନାୟକ ପରିବାର ପ୍ରଭୃତି ଅନ୍ୟତମ । ସେମାନେ ତତ୍କାଳୀନ ଶାସକ ଖୋର୍ଦ୍ଧା ପଲିଟିକାଲ ଏଜେଣ୍ଟଙ୍କ କାର୍ଯ୍ୟାଳୟରେ ଖଜଣା ଅସୁଲ କରି ଦାଖଲ କରୁଥିଲେ । ପଲିଟିକାଲ ଏଜେଣ୍ଟ କିମ୍ବା ତାଙ୍କର ପ୍ରତିନିଧିମାନେ ସାମୟିକ

ଏ ଅଞ୍ଚଳ ଗସ୍ତ କରି ବଡ଼କୂଳ ବଙ୍ଗଳାରେ କିମ୍ବା ବାଣପୁର ପଲଟଣ ବଙ୍ଗଳାରେ ୨/୩ ଦିନ ରହି କାର୍ଯ୍ୟ ସଂପାଦନ କରୁଥିଲେ । ସେତେବେଳେ ଏହି ସରବାରାକାର ମାନେ ଘିଅ, ମହୁ, ଖିର, ମାଂସ, ମାଛ, କାଷ୍ଠୋପରଣ ପ୍ରଭୃତି ସେମାନଙ୍କୁ ଯୋଗାଇଦେଇ ସେମାନଙ୍କ ପ୍ରିୟପାତ୍ର ହେବାପାଇଁ ଚେଷ୍ଟା କରୁଥିଲେ । ବେଳେ ବେଳେ କେଉଁ ସରବରାକାର କଣ ସବୁ ଦେବେ ତାହାର ବରାଦ ମଧ୍ୟ ଆତୁରା ଦିଆଯାଉଥିଲା ।

ଦଫାଦାରମାନେ ଶାନ୍ତିଶୃଙ୍ଖଳା ରକ୍ଷାରେ ନିକଟସ୍ଥ ଥାନା ଅଧିକାରୀଙ୍କୁ ସାହାଯ୍ୟ କରୁଥିଲେ । ଏ ଅଞ୍ଚଳରେ ବହୁ ପରିବାର ଏବେ ମଧ୍ୟ ଦଫାଦାର ପରିବାର ରୂପେ ପରିଚିତ । ଏହି ଦଫାଦାରଙ୍କ ଅଧୀନରେ ଗାଁମାନଙ୍କରେ ଚଉକିଆ ସବୁ ନିଯୁକ୍ତି ପାଉଥିଲେ । ଏହିମାନଙ୍କ ମାଧ୍ୟମରେ ଗ୍ରାମମାନଙ୍କର ଖବର ଥାନାରେ ପହଞ୍ଚୁଥିଲା ।

# ସାମାଜିକ ଜୀବନ

ବାଣପୁର ସେତେବେଳେ ମୁଖ୍ୟ ବାଣିଜ୍ୟସ୍ଥଳୀ ଥିଲା । କେତେକ କୁମୁଟି ମାରୁଆଡ଼ି ଏଠାରେ ବିଶିଷ୍ଟ ବ୍ୟବସାୟୀ ରୂପେ ପରିଚିତ ଥିଲେ । ବାଲୁଗାଁ, ପାରିକୁଦ, ନାଚୁଣି, ବଉଳାବନ୍ଧ, କୁହୁଡ଼ି ଅଞ୍ଚଳର ଲୋକମାନେ ଏହି ବଜାର ଉପରେ ନିର୍ଭରଶୀଳ ଥିଲେ । ରାମଚନ୍ଦ୍ର ସୁବୁଦ୍ଧି, ଲୋକିରାମ, ରଘୁନାଥ ସୁବୁଦ୍ଧି, କପିଳପାତ୍ର ପ୍ରଭୃତି ବଡ଼ ବଡ଼ ବ୍ୟବସାୟ କେନ୍ଦ୍ରର ମାଲିକ ଥିଲେ । ରାମଚନ୍ଦ୍ର ସୁବୁଦ୍ଧିଙ୍କ ମନୋହର ଦୋକାନ ଲୋକମାନଙ୍କୁ ଆକୃଷ୍ଟ କରୁଥିଲା ।

ତତ୍କାଳୀନ ବଜାର ଦର ଶୁଣିଲେ ଏ ଯୁଗର ଲୋକେ ବିଶ୍ୱାସ କରିପାରିବେ ନାହିଁ । ପାହୁଲା, ଅଧଲା, ପଇସା, ଦୁଇପଇସା, ଅଣା, ଦୋଅଣା, ୪ଅଣା, ୮ଅଣା ଟଙ୍କା କିଆ ମୁଦ୍ରାର ପ୍ରଚଳନ ଥିଲା । ଏବେ ମଧ୍ୟ ସେହି ପଞ୍ଚମ ଜର୍ଜ ରୂପାଟଙ୍କା ବହୁମୂଲ୍ୟରେ ବିକ୍ରି ହେଉଥିବାର ସମସ୍ତେ ଜାଣନ୍ତି । ସେତେବେଳେ ଧାନ ଟ ୧ରେ ୧୨୩ ଗୌଣୀ, ଚାଉଳ ଟଙ୍କାରେ ୧୬ ସେର, ଖାଇବା ତେଲ ସେର ମାତ୍ର ୮ଅଣା, କାଠ ୧ଶଗଡ଼ ଟ ୧.୦୦, ସୁନା ତୋଳାକ ଟ ୨୫.୦୦, ଖଙ୍ଗାମାଛ ବିଶା ଏକ ଅଣା ଥିଲା । ମୂଲିଆ ମଜୁରି ଦିନକୁ ୨ଅଣା ଓ ମାଣକ ଜମି ୧୦୦ଟଙ୍କାରେ ମିଳୁଥିଲା ।

ତତ୍କାଳୀନ କଳା ଓ ସଂସ୍କୃତି ପ୍ରତି ଏ ଅଞ୍ଚଳର ଲୋକମାନେ ଉତ୍ସାହିତ ଥିଲେ । ଗ୍ରାମର ଲୋକମାନଙ୍କ ଚିତ୍ତବିନୋଦନ କରି ନରସିଂହ ମହାପ୍ରଭୁ ଚଇତି ଘୋଡ଼ା ନାଚ, ମୁଣ୍ଡ ପୋତା କେଳା ନାଚ, ସାପୁଆ କେଳା ପାଇକ ଆଖଡ଼ାକାନୁଘଣ୍ଟିଆ, ଚକୁଳିଆ ପଣ୍ଡା, ହଟଚପଟ ବିଦ୍ୟା, କଣ୍ଢେଇ ନାଚ ପ୍ରଭୃତି ଦେଖାଇ ଚାଉଳ ଓ ପଇସା ମାଗି ନେଉଥିଲେ ।

ପାଲା, ଦାସକାଠିଆ, ଝାମୁଯାତ୍ରା, ରାସଲୀଳା, କୃଷ୍ଣଲୀଳା, ପ୍ରହ୍ଲାଦ ନାଟକ, ଗୀତାଭିନୟ, ଗୋଟିପୁଅ ନାଚ, ଦଣ୍ଡଯାତ୍ରା ପ୍ରଭୃତି ବିଭିନ୍ନ ଯାତ୍ରା ପ୍ରତି

ଲୋକମାନେ ଅତ୍ୟନ୍ତ ଲାଳାୟିତ ଥିଲେ । ବାଣପୁରରେ ବାଦିପାଲା ଏକ ବିଶିଷ୍ଟ ଆକର୍ଷଣ ଥିଲା । ଏଥିରେ ଭାଗନେବାପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନରୁ ପ୍ରସିଦ୍ଧ କଳାକାରମାନେ ପ୍ରତିବର୍ଷ ଆସୁଥିଲେ । ସେମାନଙ୍କ ମଧ୍ୟରେ କଟକର ହରିନାଥ, ନରିନାଥ, ରଣପୁରର ବିଶ୍ୱନାଥ ପଟ୍ଟଯୋଷୀ, ବାଣପୁର ଅନ୍ତର୍ଗତ ହରିପୁରର ଲୋକନାଥ କର ଶ୍ରେଷ୍ଠ ଥିଲେ । ଦିନ, ଦିନ ଧରି ଏହି ବାଦୀପାଲା ବାଣପୁର ଅଞ୍ଚଳରେ ଚାଲୁଥିଲା । ସେହିଭଳି ନିମିଖେତାରେ ଶୀଳତଷଷ୍ଠୀ ଯାତ୍ରାରେ ବାଦୀପାଲା ସେତେବେଳେ ଏ ଅଞ୍ଚଳରେ ପ୍ରସିଦ୍ଧ ଥିଲା । ବହୁ ଗୁଣୀ ମାନୀ ବ୍ୟକ୍ତିମାନେ ଏହି ବାଦିପାଲାରେ ଉପସ୍ଥିତ ରହି ପରମ ସଂସ୍କୃତଜ୍ଞ ପାଲାକାର ମାନଙ୍କ ସହ ତର୍କ ଓ ଯୁକ୍ତିରେ ଭାଗ ନେଉଥିଲେ । କୁମାରାଙ୍ଗର କୁଣ୍ଡଳୀ ଜଗନ୍ନାଥ ମହାପାତ୍ରଙ୍କ ସଂସ୍କୃତ ତର୍କରେ ଅନେକ ପାଲାକାର ହାରମାନି ଯାଉଥିବାର ଅନେକ କୁହନ୍ତି । ପୁରାତନ ପାଲାକାର ମଧ୍ୟରେ କୁମାରାଙ୍ଗର ରଘୁ ରାଉଳ ଓ ସୁବୁଦ୍ଧିପାଟଣାର ଲଡୁକିଶୋର ନନ୍ଦ ପ୍ରସିଦ୍ଧ ଥିଲେ । ଗୋବିନ୍ଦପୁର ଗତୀଶ୍ୱର, ଗୋପାଳପୁର ଶାସନ ଓ ଇଞ୍ଜନପୁରରେ ସେହିଭଳି ଚନ୍ଦନ ଯାତ୍ରା ଓ ଆତସବାଜି ପ୍ରତିଯୋଗିତା ଅତ୍ୟନ୍ତ ଚିତ୍ତାକର୍ଷକ ହେଉଥିବାର ଏବେ ମଧ୍ୟ ବହୁ ପୁରୁଣା ଲୋକମାନଙ୍କ ମୁଖରୁ ଶୁଣାଯାଏ ।

ପଞ୍ଚଦୋଳ ଯାତ୍ରାବେଳେ ପୁଞ୍ଜିଆମା ଠାକୁର ଓ ଅଚ୍ୟୁତରାଜପୁର ଠାକୁରଙ୍କ ମଧ୍ୟରେ ପ୍ରବଳ ଗଣ୍ଡଗୋଳ ହୋଇ ବହୁବର୍ଷ ମକଦ୍ଦମା ଚାଲିଥିବାର ସମସ୍ତେ ଜାଣନ୍ତି । ଏପରିକି ଏହି ମକଦ୍ଦମାରେ ମଧୁବାରିଷ୍ଟର ଅଚ୍ୟୁତରାଜପୁର ସପକ୍ଷରେ ଲଢୁଥିବାର ପ୍ରମାଣ ରହିଛି ।

ଦାସକାଠିଆ ଭିତରେ ଗଞ୍ଜାମର ଖଣ୍ଡରା ଦାସକାଠିଆ ( କୃଷ୍ଣ ଓ କାଳୁ) ପ୍ରଥମେ ସୁପ୍ରସିଦ୍ଧ ଥିଲେ ଓ ପରେ ବୈଦ୍ୟନାଥ ଭୀମ ଏଥିରେ ଅତ୍ୟନ୍ତ ଉତ୍କର୍ଷ ପ୍ରତିପାଦନ କରି ଦିଲ୍ଲୀ ଦରବାରରେ ପୁରସ୍କୃତ ହୋଇଥିଲେ । ଏହି ଦୁଇଦଳ

ବାଣପୁରର ପ୍ରତ୍ୟେକ ପୁରପଲ୍ଲିରେ ବହୁନାମ କରିଥିଲେ । କାର୍ତ୍ତିକ ପୂର୍ଣ୍ଣିମା ଦିନ ତୁମ୍ବୁରାପୁଟ ମହାଦେବଙ୍କ ମନ୍ଦିର ସମୀପରେ ପୁରୁଷୋତ୍ତମ ମହାପାତ୍ରଙ୍କ ଉଦ୍ୟମରେ ଏହି ଦାସକାଠିଆ ପ୍ରାୟ ପ୍ରତିବର୍ଷ ହେଉଥିଲା । ବାଣପୁରରେ ହନୁମନ୍ତଟାଙ୍ଗିର ଦୁଇଭାଇଙ୍କ ଦାସକାଠିଆ ମଧ୍ୟ ଚମତ୍କାର ମେଳ ଥିଲା ।

ରାସଯାତ୍ରା ବାଣପୁରର ଏକ ପ୍ରିୟ ଯାତ୍ରା ଥିଲା । ଶ୍ରୀ ରଙ୍ଗନାଥଙ୍କ ରାସମଣ୍ଡପରେ ପ୍ରତିବର୍ଷ ଏ ରାସଯାତ୍ରା ଦିନ ଦିନ ଧରି ଅନୁଷ୍ଠିତ ହେଉଥିଲା । ସୁଦୂର ଗଞ୍ଜାମ, ରଣପୁର ଅଞ୍ଚଳରୁ ବହୁ ଲୋକ ଏ ରାସଯାତ୍ରା ଦେଖିବାକୁ ଆସୁଥିଲେ । ସେହିପରି ବାଲୁଗାଁ ପାଟଣାସାହିରେ ଆଉ ଏକ ମେଳ ରାଲଲା ଖୁବ୍ ପ୍ରସିଦ୍ଧି ଲାଭ କରିଥିଲା । ମୋହନ ଗୋସାଇଁଙ୍କ ରାସଲୀଳା ସବୁଠାରୁ ଜନପ୍ରିୟ ଥିଲା ।

ତତ୍କାଳୀନ ସମାଜରେ ସଙ୍ଗୀତ ଏକ ଆକର୍ଷଣୀୟ କଳା ଥିଲା । ସୁଦୂର ଗଞ୍ଜାମରୁ ବିଭିନ୍ନ ସ୍ଥାନରୁ ସଂଗୀତ ଦଳ ବାଣପୁର ଆସି ସଂଗୀତ ପରିବେଶଣ କରୁଥିଲେ । ଗୋଟିପୁଅ ନାଚ ମଧ୍ୟ ବାଣପୁର ଅଞ୍ଚଳରେ ବହୁ ସମୟରେ ଅନୁଷ୍ଠିତ ହେଉଥିଲା । ସେତେବେଳର କବିସୂର୍ଯ୍ୟ ବଳଦେବ ରଥ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ପାରଳାଖେମୁଣ୍ଡିର ସ୍ୱଭାବ କବି ଗୋପାଳକୃଷ୍ଣ ପଟ୍ଟନାୟକ ପ୍ରଭୃତିଙ୍କ ମନୋଜ୍ଞ ଲେଖାଗୁଡ଼ିକୁ ସଂଗୀତ ଦଳ ବିଶେଷ ଭାବରେ ଗାଉଥିଲେ ।

୧୯୩୦ ରୁ ୧୯୩୮ ମଧ୍ୟରେ ବୈଷ୍ଣବ ପାଣି ମେଳ, ବାଳକୃଷ୍ଣ ମେଳ, ରାକୁ ମେଳ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ବୈଷ୍ଣବ ପାଣିଙ୍କ ଗୀତାଭିନୟ ଓ ଗୀତିନାଟ୍ୟ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇପାରୁଥିଲା । ହାଡ଼ିଆ ମେଳ ନାମରେ ଆଉ ଏକ ଯାତ୍ରା ମେଳ ବାଣପୁର ଅଞ୍ଚଳରେ ମଧ୍ୟ ଜନପ୍ରିୟ ହୋଇଥିଲା ।

ଜଗତ୍‌ସିଂହପୁର ବାଳକୃଷ୍ଣ ମାହାନ୍ତିଙ୍କ ଜୟ ଦୁର୍ଗା ନାଟ୍ୟ ମଣ୍ଡଳୀ ସେତେବେଳେ ଖୋର୍ଦ୍ଧା ଓ ବାଣପୁର ଅଞ୍ଚଳରେ ବିଶେଷଭାବେ ଆଦୃତ ହେଉଥିଲା

। ଶ୍ରୀଯୁକ୍ତ ବାଉରିବନ୍ଧୁ ମହାନ୍ତି ଏହି ନାଟ୍ୟମଣ୍ଡଳୀର ପରିଚାଳନା କରି ଓଡ଼ିଶାର ନାଟ୍ୟ ଜଗତରେ ଝଲକ ସୃଷ୍ଟି କରିଥିଲେ । ସେତେବେଳେ ବାଣପୁରର ସରକାରୀ ଡ଼ାକ୍ତର, କାଳୀଚରଣ ପଟ୍ଟନାୟକ ଏହି ଯାତ୍ରାପାର୍ଟିର ପରିଚାଳନାରେ ବିଶେଷ ସାହାଯ୍ୟ କରିଥିଲେ ।

ସେହିଭଳି ରାଜକିଶୋର ପଟ୍ଟନାୟକ ଯାତ୍ରାଦଳ ରାଜୁ ମେଳ ନାମରେ ବାଣପୁରରେ ଖ୍ୟାତିଲାଭ କରିଥିଲା । ସେ ମଧ୍ୟ ବାଣପୁରର ଜ୍ୱାଇଁ ହୋଇଥିବାରୁ ତାଙ୍କ ଦଳକୁ ସମସ୍ତେ ଭଲ ପାଉଥିଲେ । ୧୯୪୦ରେ ବାଣପୁରର କପି ରାମଙ୍କ ସହାୟତାରେ ଗୋଡ଼ିପଦରରେ ଆଉ ଏକ ମେଳ ଗଠିତ ହୋଇଥିଲା ଓ ସୁନାମ ଅର୍ଜନ କରିଥିଲା । ଏହାକୁ ଗୋଡ଼ିପଦର ମେଳ କୁହାଯାଉଥିଲା ।

ବାଣପୁର ମାଟି ଉତ୍କଳର ସର୍ବଶ୍ରେଷ୍ଠ ଅନ୍ନପୂର୍ଣ୍ଣା ଥିଏଟରର ଜନ୍ମଦାତା ଅଟେ । ବାଣପୁର ଖଣ୍ଡୁଆଳକୋଟ ଓ ଲମ୍ବୋଦରପୁର ଗାଁର ଶ୍ରୀଯୁକ୍ତ ସୋମନାଥ ଦାସ, ଚକ୍ରପାଣି ଦାସ ଓ ଲିଙ୍ଗରାଜ ନନ୍ଦ ଅତ୍ୟନ୍ତ କଳାପ୍ରେମୀ ଥିଲେ । ପରବର୍ତ୍ତୀକାଳରେ ଏହି କଳାପ୍ରେମୀମାନେ ଜୟ ଦୁର୍ଗା ନାଟ୍ୟମଣ୍ଡଳୀରେ କାର୍ଯ୍ୟ କରୁଥିବା ଶ୍ରୀଯୁକ୍ତ ବାଉରିବନ୍ଧୁ ମହାନ୍ତିଙ୍କୁ ଅଣାଇ ୧୯୩୪ ମସିହାରେ ଅନ୍ନପୂର୍ଣ୍ଣା ନାଟ୍ୟ ସଂସଦ ଗଠନ କରିଥିଲେ । ଏହିଠାରୁ ଏକ ନୂତନ ବାତାବରଣ ସୃଷ୍ଟି ହୋଇ ଅନ୍ନପୂର୍ଣ୍ଣା ଥିଏଟର ଗଠିତ ହେଲା ।

ସେତେବେଳେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଓ ମୋହନ ଗୋସ୍ୱାମୀଙ୍କ ରାସଲୀଳା ଚତୁର୍ଦ୍ଦିଗରେ ଖ୍ୟାତି ଲାଭ କରିଥିଲା । ଏହି ଦୁଇଜଣ ଓଡ଼ିଶାର କଳାକାର ପ୍ରତିଭା ସୃଷ୍ଟି କରିବା ଓ ନାଟକ, ସଂଗୀତ, ଲେଖା ଦ୍ୱାରା ସାହିତ୍ୟକୁ ଋଦ୍ଧିମନ୍ତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ମୋହନ ଗୋସାଇଁଙ୍କୁ ବହୁବାର ତାଙ୍କ ଅବସ୍ଥାନ ନିକଟରେ ରାସଲୀଳା କରିବାପାଇଁ ନିମନ୍ତ୍ରଣ କରୁଥିଲେ ।

ସେତେବେଳେ ପୁଞ୍ଜିଆମା ଶାସନର ୰ଆନନ୍ଦ ଚନ୍ଦ୍ର ହୋତା ଏ ଅଞ୍ଚଳର ବିଶିଷ୍ଟ ଜ୍ୟୋତିଷୀ ଭାବେ ବହୁ ସମ୍ମାନର ଅଧିକାରୀ ଥିଲେ । କର୍ଣ୍ଣ ପିଶାଚୀ ମନ୍ତ୍ର ବଳରେ ଭୂତ ଓ ଭବିଷ୍ୟତ କଥା ନିର୍ଭୂଲ ଭାବରେ କହିପାରୁଥିଲେ ।

ମଲ୍ଲଯୁଦ୍ଧରେ କୁମାରାଙ୍ଗର ଜୟୀ ମଲ୍ଲ ଓ ଅଚ୍ୟୁତରାଜପୁରର ବିଶ୍ୱନାଥ ଷଡ଼ଙ୍ଗୀ ପ୍ରସିଦ୍ଧ ଥିଲେ । ପ୍ରବାଦ ଅଛି, ବିଶ୍ୱନାଥ ଷଡ଼ଙ୍ଗୀ କୁଆଡ଼େ ମହାବଳ ବାଘ ସାଥିରେ ଯୁଦ୍ଧ କରି ତାକୁ ନିହତ କରିଥିଲେ । ସେହିଭଳି ବଡ଼କୂଳର ଚୌଧୁରୀ ପାଇକରାୟ ଏକ ବିଶିଷ୍ଟ ମଲ୍ଲଭାବରେ ଓ ପାଇକ ଆଖଡ଼ାର ଗୁରୁ ଭାବରେ ପ୍ରଖ୍ୟାତ ଥିଲେ । ପଲଟଣ ପଡ଼ିଆରେ ତତ୍କାଳୀନ ମଲ୍ଲଯୁଦ୍ଧରେ ସେ ବିଜୟୀ ହୋଇ ବାଣପୁରର ଟେକ ରଖିଥିଲେ ।

ବାଣପୁରର ଗଦାଧର ପାତ୍ର ଓ ଭୀମପୁରର ବଳଭଦ୍ର ମଙ୍ଗରାଜ ସେତେବେଳେ ଭଲଲୋକି କରିବାରେ ସିଦ୍ଧହସ୍ତ ଥିଲେ । ଅନେକ ଗ୍ରାମ୍ୟ ବିବାଦ ସେମାନଙ୍କ ଦ୍ୱାରା ମୀମାଂସା ହୋଇପାରୁଥିଲା ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସାଇକେଲ ବା ଶୂନ୍ୟଗାଡ଼ିର ପ୍ରଚଳନ ଆରମ୍ଭ ହୋଇଥିଲା । ୧୯୦୬ ବେଳକୁ କଲେକ୍ଟର, ପୋଲିସ୍, ଏଷ୍ଟି ଓ ସିଭିଲ୍‌ସର୍ଜନମାନଙ୍କୁ ଏହି ଗାଡ଼ି ଯୋଗାଇ ଦିଆଯାଇଥିଲା ।

ପଣ୍ଡିତ ଗୋଦାବରୀଶ ମିଶ୍ର ୧୯୧୦ ମସିହାରେ ପ୍ରଥମେ ବାଣପୁରକୁ ଲଣ୍ଠନ ଆଣିଥିଲେ । ଏହା ପୂର୍ବରୁ ନାଁତାରା ସବୁ ବ୍ୟବହୃତ ହେଉଥିଲା ।

ଭୀମପୁରର ଝାଡ଼ୁ ମିଶ୍ର ସେତେବେଳେ ଜଣେ ପ୍ରଖ୍ୟାତ ଶିଳ୍ପୀ ଥିଲେ । ଅସୁର, ଅସୁରୁଣୀ, ବୁଢାବୁଢୀ, ସାଇକ, ସାଇବାଣୀ, କନ୍ଧ, କନ୍ଧୁଣୀ ପ୍ରଭୃତି ଅନେକ ସୁନ୍ଦର ସୁନ୍ଦର ମୂର୍ତ୍ତି ଗଢି ସେ ବାଣପୁର ଓ ବାଲୁଗାଁରେ ବିକ୍ରୟ କରୁଥିଲେ । ଝାଡୁମିଶ୍ରଙ୍କ ପୁତ୍ର ପରେ ଜଣେ ସଂଗୀତ ବିଶାରଦ ରୂପେ ଖ୍ୟାତି ଅର୍ଜ୍ଜନ କରିଥିଲେ ।

# ବାଣପୁରର ଗୌରବ
# ପଣ୍ଡିତ ଗୋଦାବରୀଶ ମିଶ୍ର

ଏହି ମାଟିରେ ଜଣେ ଗରିବ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରି ପ୍ରାକ୍ ସ୍ୱାଧୀନତା କାଳରେ ବାଣପୁରର ସର୍ବବିଧ ଉନ୍ନତି କରିବା ସଂଗେ ସଂଗେ ଓଡ଼ିଶାର ଶିକ୍ଷା ଆକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ରୂପେ ପ୍ରତିଭାତ ହୋଇଥିଲେ । ବିହାର ଓଡ଼ିଶା ଆସେମ୍ବ୍ଲିର ସଭ୍ୟ ତଥା ମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇ ଉତ୍କଳମାତାର ଯେଉଁ ସେବା କରିଯାଇଛନ୍ତି ତାହା ଅବର୍ଣ୍ଣନୀୟ । ତାଙ୍କ ବିଷୟରେ ଏ ପିଢିର ପିଲାମାନେ ଅଳ୍ପ ବହୁତ ଜାଣିଛନ୍ତି ଓ ତାଙ୍କୁ ବାଣପୁରର ଗୌରବ ରୂପେ ପୂଜା କରୁଛନ୍ତି ।

ସେହିଭଳି ଜଣେ କୃତୀ ସନ୍ତାନ ଏ ମାଟିରେ ଜନ୍ମ ଲଭିନଥିଲେ ହୁଏତ ବାଣପୁରର ଅବସ୍ଥା ନିଶ୍ଚିତ ଭାବରେ ନିମ୍ନଗାମୀ ହୋଇଥାଆନ୍ତା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ଆଜିର ଶାଳିଆ ନଦୀବନ୍ଧ ଯୋଜନା ପାଇଁ ଯେଉଁ ଅଙ୍କୁରାରୋପଣ କରାଇଥିଲେ ୧୯୬୦ ମସିହାରେ ତାହା କାର୍ଯ୍ୟକାରୀ ହୋଇଥିଲା । ଏଣୁ ବାଣପୁର ଆଜି ଶସ୍ୟ ଶ୍ୟାମଳା ଓ ମରୁଡ଼ି, ବନ୍ୟାଭୟରୁ ମୁକ୍ତ । ସେହିଭଳି ଶାଳିଆ ନଦୀର ପାର୍ଶ୍ୱବନ୍ଧ ( ସୀମାବନ୍ଧ ) ତାଙ୍କ ମାନସିକ ପ୍ରସ୍ତୁତି ଥିଲା । ତାଙ୍କୁ ପ୍ରତି ପଦକ୍ଷେପରେ ସାହାଯ୍ୟ କରିଥିବା କୁମାରାଙ୍ଗର ନିଆଁଖୁଣ୍ଟା ଗୋଦାବରୀଶ ମହାପାତ୍ରଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ବାଣପୁରର ଗର୍ବ ଓ ଗୌରବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଆଜିର ଗୋଦାବରୀଶ ବିଦ୍ୟାପୀଠ ଓ ଗୋଦାବରୀଶ ମହାବିଦ୍ୟାଳୟ ଏହି ଗୌରବମୟ ବ୍ୟକ୍ତିଙ୍କ ଗୁଣଗରିମାର ମୂକସାକ୍ଷୀ ।

ଅବଶ୍ୟ ସ୍ୱାଧୀନତାପରେ ଏହି ମାଟିର ଗୌରବ ବଢାଇବାରେ ଅନେକ ବ୍ୟକ୍ତିତ୍ୱ କାର୍ଯ୍ୟ କରିଛନ୍ତି ଯେଉଁମାନଙ୍କ ବିଷୟରେ ଏହି ଇତିକଥାରେ ଦର୍ଶାଯାଇ ନାହିଁ । କେବଳ ଦେଶର ସ୍ୱାଧୀନତା ପର୍ଯ୍ୟନ୍ତ ବାଣପୁରରେ ଘଟିଥିବା ବିଶିଷ୍ଟ ଘଟଣା ଓ ବ୍ୟକ୍ତିତ୍ୱକୁ ନେଇ ଏହି ଇତିକଥା ପ୍ରକାଶିତ ।

# ବାଲୁଗାଁରେ ଶିକ୍ଷାର ବିକାଶ

ବାଣପୁର ହାଇସ୍କୁଲ ପ୍ରତିଷ୍ଠିତ ହେବାର କିଛିବର୍ଷ ପରେ ବାଲୁଗାଁରେ ଶିକ୍ଷାର କ୍ରମବିକାଶ ଘଟିଥିଲା । ପ୍ରଥମେ ଏ ଅଞ୍ଚଳର ବିଶ୍ୱାଳ ବଂଶର ରାଜନ୍ ବିଶ୍ୱାଳ ଓ ଫକୀର ବିଶ୍ୱାଳଙ୍କ ଉଦ୍ୟମରେ ବର୍ତ୍ତମାନ ବାଲୁଗାଁ ସିନେମା ହଲ୍‌ର ସାମ୍ନାରେ ଥିବା ସ୍ଥାନରେ ନିର୍ଦ୍ଦିଷ୍ଟ ଭାବରେ ଆଜିର ଲୋକନାଥ ପ୍ରେସ୍ ଠାରୁ ଅଶୋକ ହୋଟେଲ ପର୍ଯ୍ୟନ୍ତ ଟାଇଲ୍ ଛପର ଘରେ ମଧ୍ୟ ଇଂରାଜୀ ବିଦ୍ୟାଳୟ ଖୋଲାଯାଇଥିଲା । ଏଥିରେ ପାରିକୁଦ ରାଜବଂଶଜ ଶ୍ରୀଯୁକ୍ତ ବିମ୍ବାଧର ସିଂହସାମନ୍ତ ପ୍ରଧାନଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ଓ ଆଦର୍ଶଗତ ଜୀବନ ଶୈଳୀ ଏ ଅଞ୍ଚଳର ଶିକ୍ଷା ବିକାଶରେ ଏକ ମାଇଲ୍‌ଖୁଣ୍ଟ ଭଳି କାର୍ଯ୍ୟ କରିଥିଲା । ଛାତ୍ରବତ୍ସଳ ସିଂହସାମନ୍ତ ଖୁବ୍ କମ୍ ଦିନ ମଧ୍ୟରେ ଏତେ ଜନପ୍ରିୟ ହୋଇପାରିଥିଲେ ତାହା କଳ୍ପନାତୀତ । ତାଙ୍କୁ ସାହାଯ୍ୟ କରିବା ପାଇଁ କେତେଜଣ ଆଦର୍ଶ ଶିକ୍ଷକ ତାଙ୍କ ସାଙ୍ଗରେ କାର୍ଯ୍ୟକରୁଥିଲେ । ସେମାନଙ୍କ ଭିତରେ ଅଚ୍ୟୁତରାଜପୁରର ଭୁବନେଶ୍ୱର ମିଶ୍ର, କୁମାରାଙ୍ଗର ଆନନ୍ଦଚନ୍ଦ୍ର ମହାପାତ୍ର, ବାଣପୁରର ବ୍ରଜ କିଶୋର ପାତ୍ର, ବାଲୁଗାଁର ଭାଗୀରଥି ମହାପାତ୍ର ଅତ୍ୟନ୍ତ ଆଦର୍ଶ ଶିକ୍ଷକ ଥିଲେ ।

କିଛିବର୍ଷ ପରେ ବଦାନ୍ୟ ଫକୀର ବିଶ୍ୱାଳଙ୍କ ଦାନରେ ଆଜିର ବାଲୁଗାଁ ହାଇସ୍କୁଲର ମୂଳଦୁଆ ପଡ଼ିଥିଲା । ସେ ଏକ ବିସ୍ତୀର୍ଣ୍ଣ ଜମି ଦାନ କରି ବାଲୁଗାଁର ଶିକ୍ଷା ବିକାଶ କ୍ଷେତ୍ରରେ ଏକ ଉଜ୍ଜ୍ୱଳ ନକ୍ଷେତ୍ର ରୂପେ ଚିରଦିନ ପାଇଁ ଅବିସ୍ମରଣୀୟ ଅଟନ୍ତି । ଫକୀର ବିଶ୍ୱାଳଙ୍କ ସହ ପ୍ରଧାନଶିକ୍ଷକ ସିଂହସାମନ୍ତ କ୍ଷୀରନୀର ଭଳି ସମ୍ପର୍କ ଥିଲା । ବୋଧହୁଏ ସିଂହସାମନ୍ତଙ୍କ ପରାମର୍ଶ ଓ ଅନୁରୋଧକୁ ଏଡ଼ାଇ ନପାରି ଫକୀର ବିଶ୍ୱାଳ ଏ ମାଟିରେ ଏକ ବିଶିଷ୍ଟ ଶିକ୍ଷାୟତନ ପ୍ରତିଷ୍ଠା କରିବାକୁ ଆଗେଇ ଆସିଥିବାର ଅନେକ କୁହନ୍ତି । ଏହି ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ସ୍ୱର୍ଗତ

ରାଧାଚରଣ ପଣ୍ଡାଙ୍କ ପରାମର୍ଶ ଓ ସାହାଯ୍ୟ ମଧ୍ୟ ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ । ଜମି ଦାନ ପରେ ପ୍ରଧାନ ଶିକ୍ଷକ ସିଂହ ସାମନ୍ତଙ୍କ ବ୍ୟକ୍ତିଗତ ଉଦ୍ୟମ ଓ କେତେକ ସ୍ଥାନୀୟ ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ବାଲୁଗାଁ ହାଇସ୍କୁଲକୁ ଆଗେଇ ନେଇଥିଲା ।

ଏହା କିଛିଦିନ ପରେ ନିର୍ମିତ ହୋଇଥିବା ହଷ୍ଟେଲ ଘରଟି ହଠାତ୍ ଏକ ବିଦ୍ୟୁତ୍ ଆଘାତରେ ପୋଡ଼ି ଧ୍ୱଂସ ହୋଇଯାଇଥିଲା । ଏଥିରେ ପ୍ରଧାନ ଶିକ୍ଷକ ସିଂହ ସାମନ୍ତ ଅତ୍ୟନ୍ତ ଭାଙ୍ଗିପଡ଼ିଥିଲେ । କିନ୍ତୁ ବାଲୁଗାଁର ତତ୍କାଳୀନ ଜଣେ ବଦାନ୍ୟ ବ୍ୟବସାୟୀ ଶ୍ରୀଯୁକ୍ତ ଲକ୍ଷ୍ମଣ ପାତ୍ର ଏହି ହଷ୍ଟେଲଟିର ନିର୍ମାଣ କରି ପୁନର୍ବାର ପୂର୍ବର ସୁନ୍ଦର ବାତାବରଣ ସୃଷ୍ଟି କରାଇଲେ । ଲକ୍ଷ୍ମଣ ପାତ୍ରଙ୍କ ସେଦିନର ଏହି ଦାନ ଆଜିର ବିଦ୍ୟାପୀଠକୁ ବାସ୍ତବରେ ଜୀବନ୍ୟାସ ଦେଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ବିମ୍ବାଧର ସିଂହସାମନ୍ତ ସାରା ଜୀବନ ନିରବଚ୍ଛିନ୍ନ ଭାବରେ ବାଲୁଗାଁ ହାଇସ୍କୁଲ ପ୍ରତିଷ୍ଠା ଓ ପ୍ରଗତି କରିବପାଇଁ ଯେଉଁ ଅକ୍ଲାନ୍ତ ଉଦ୍ୟମ କରିଥିଲେ ତାହା ବାସ୍ତବିକ ବିରଳ । ସେଭଳି ଏକ ପ୍ରତିଭା ତଥା ଆଦର୍ଶ ବ୍ୟକ୍ତିତ୍ୱ ଏ ଯୁଗରେ କଳ୍ପନାତୀତ । ଆଜି ବାଲୁଗାଁ ହାଇସ୍କୁଲର ପ୍ରତିଧୂଳିକଣାରେ ସେହି ମହାନ୍ ଆତ୍ମାଙ୍କ ପ୍ରେରଣା ଭରି ରହିଛି ।

# ବିଂଶ ଶତାବ୍ଦୀର ପ୍ରଥମଭାଗରେ ସାହିତ୍ୟ ଓ ସଂସ୍କୃତିର ଶ୍ରେଷ୍ଠ ବ୍ୟକ୍ତିତ୍ୱ

## ନିଆଁଖୁଣ୍ଟା ଗୋଦାବରୀଶ ମହାପାତ୍ର

କୁମାରାଙ୍ଗରେ ୧୯୯୮ ମସିହାରେ ପିତା ଦୟାନିଧି ମହାପାତ୍ର ଓ ମାତା ଗେଲ୍ଲୀ ଦେଈଙ୍କ ଔରସରୁ ଜନ୍ମ । ବାଲ୍ୟକାଳରେ ଗ୍ରାମ ଚାଟଶାଳୀ ପାଠ ସାରି ୧୯୧୧ ରୁ ୧୯୧୫ ପର୍ଯ୍ୟନ୍ତ ବାଣପୁର ମାଇନର ସ୍କୁଲରେ ଅଧ୍ୟୟନ କରିବା ପରେ ପଣ୍ଡିତ ଗୋଦାବରୀଶଙ୍କ ପ୍ରେରଣାରେ ସତ୍ୟବାଦୀ ବନ ବିଦ୍ୟାଳୟରେ ଛାତ୍ର ରୂପେ ଯୋଗଦାନ କଲେ । ଏହିଠାରୁ ଆରମ୍ଭ ହେଲା ତାଙ୍କର କବିତ୍ୱ ଭାବଧାରା ଏବଂ କଲମରୁ ଝରିଲା ଅସଖ୍ୟ କବିତା, ଗଳ୍ପ, ଉପନ୍ୟାସ ତଥା ସମାଲୋଚନା ମୂଳକ ଅଗ୍ନିବର୍ଷୀ ଲେଖା । ତାଙ୍କର ପ୍ରଥମ ମର୍ମସ୍ପର୍ଶୀ କବିତା 'କବିର ଗାନ' ଗୋପବନ୍ଧୁଙ୍କ ସଂପାଦନାରେ ପ୍ରକାଶିତ ସତ୍ୟବାଦୀ ପତ୍ରିକାରେ ପ୍ରକାଶିତ ହେଲା ଏହାପରେ ଉତ୍ତରାୟଣୀ ଗଣେଷ ପତ୍ରିକା ଖଣ୍ଡକାବ୍ୟ ବାଣପୁର ଓ ବାଣୀ ପ୍ରଭୃତି ଅତ୍ୟନ୍ତ ସାରବର୍ଭକ କବିତା ଓ ଗଳ୍ପ ତତ୍କାଳିନ ବିଭିନ୍ନ ପତ୍ର, ପତ୍ରିକାରେ ପ୍ରକାଶିତ ହେଲା ।

୧୯୮୧ରେ ପଣ୍ଡିତ ଗୋଦାବରୀଶଙ୍କ ସହ ସ୍ୱାଧୀନତା ଅସହୋଯୋଗ ଆନ୍ଦୋଳନରେ ଯୋଗଦେଇ ତାଙ୍କ ଓଜସ୍ୱିନୀ ବକ୍ତୃତା ଦ୍ୱାରା ଜନମାନସରେ ବିପ୍ଳବର ବହ୍ନି ଜାଳିଥିଲେ । ତାଙ୍କର ଏହି ଅଗାଧ ଜ୍ଞାନ ଯୋଗୁଁ ସେତେବେଳେ ଅନେକ ପତ୍ର, ପତ୍ରିକାରେ ସଂପାଦନା ଭାର ନେବାକୁ ଅନୁରୋଧ ମିଳିଥିଲା । ଏବଂ ପୁରୀରୁ ପ୍ରକାଶ ପାଉଥିବା ଏକ ପତ୍ରିକାର ପୁରବାସୀ ଦାୟିତ୍ୱରେ ସେ ପ୍ରଥମେ ରହିଥିଲେ । ୧୯୨୫ ମସିହାରେ ତାଙ୍କର ଲେଖା 'ରାଜଦ୍ରୋହୀ' ସମଗ୍ର ଓଡ଼ିଶାରେ ବିପ୍ଳବର ବହ୍ନି ଖେଳାଇ ଦେଇଥିଲା । ଏହାପରେ ୧୯୨୮ ମସିହାରେ ବ୍ରହ୍ମପୁରରୁ ପ୍ରକାଶିତ 'ଦୈନିକ ଆଶା' ର ସହ ସଂପାଦକ ରୂପେ ସେ ନିଯୁକ୍ତି

ପାଇଥିଲେ । କିନ୍ତୁ ୧୯୨୯ରେ 'ସମାଜ' ପତ୍ରିକା ସହକାରୀ ସଂପାଦକ ପାଇବାରୁ ସେ 'ଦୈନିକ ଆଶା' ଯୋଗକଲେ । ଏହାପରେ ଉଠ କଙ୍କା, ବନ୍ଦିର ମାୟା, ପ୍ରେମପଥେ ( ଉପନ୍ୟାସ ) ଲେଖାଗୁଡ଼ିକ ସମଗ୍ର ଓଡ଼ିଶାରେ ଆଦୃତ ହେବାକୁ ଲାଗିଲା । ୧୯୩୬ ମସିହାରେ ବ୍ରହ୍ମପୁରରୁ ପ୍ରକାଶିତ ହିତୈଶିଣୀ ପତ୍ରିକାର ସଂପାଦକ ରୂପେ ଯୋଗଦେଇ ଅନେକ ବିପ୍ଳବାତ୍ମକ ଲେଖାଦ୍ୱାରା ଜନମାନସରେ ଜଣେ ପ୍ରଖ୍ୟାତ ଲେଖକ ରୂପେ ପରିଗଣିତ ହେଲେ ।

୧୯୩୮ ମସିହା ମାର୍ଚ୍ଚ ୧୨ ତାରିଖ ଦିନ ପ୍ରକୃତ ନିଆଁଖୁଣ୍ଟାର ଜନ୍ମ । ଏହିଠାରୁ ନିଆଁଖୁଣ୍ଟା ପତ୍ରିକା ମଧ୍ୟମରେ ସେ ସମଗ୍ର ଓଡ଼ିଶା ତଥା ଭାରତ ସରକାରଙ୍କ କାର୍ଯ୍ୟକ୍ରମର ଜଣେ ଜାଗ୍ରତ ପ୍ରହରୀ ରୂପେ କାର୍ଯ୍ୟ କଲେ । ୧୯୪୨ ମସିହାରେ ଏହି ନିଆଁଖୁଣ୍ଟାର କାର୍ଯ୍ୟାଳୟକୁ ସେ ବ୍ରହ୍ମପୁରରୁ କଟକକୁ ସ୍ଥାନାନ୍ତରିତ କଲେ । ଟୁଆଁଟୁଇଁ ଶିଶୁ ସାହିତ୍ୟରେ ପ୍ରକାଶନ ମଧ୍ୟ ତାଙ୍କର ଅନ୍ୟ ଏକ ଅବଦାନ । ସ୍ୱାଧୀନତା ପରେ ନିଆଁଖୁଣ୍ଟା ମାଧ୍ୟମରେ ଅଗ୍ନିବର୍ଷ ଲେଖା ଓ ସମାଲୋଚନା ଓଡ଼ିଶା ପ୍ରଶାସନ ପାଇଁ ସତର୍କ ଘଣ୍ଟି ରୂପେ କାର୍ଯ୍ୟ କର୍ଯ୍ୟକରୁଥିଲା । ଏହା ବ୍ୟତୀତ କଣ୍ଟା ଓ ଫୁଲ, ନୀଳ ମାଷ୍ଟ୍ରାଣୀ, ବଙ୍କା ଓ ସିଧା ପ୍ରଭୃତି ଅନେକ ଉପାଦେୟ ଲେଖା ଓଡ଼ିଆ ସାହିତ୍ୟକୁ ତାଙ୍କର ଅତୁଳନୀୟ ଅବଦାନ ।

ଗୋଦାବରୀଶ ମହାପାତ୍ରଙ୍କ ଅବଦାନ ଉଭୟ ଗୋଦାବରୀଶ ବିଦ୍ୟାପୀଠ, ଓ ମହାବିଦ୍ୟାଳୟର ଗଠନରେ ଉଲ୍ଲେଖଯୋଗ୍ୟ । ସେ ଗୋଦାବରୀଶ ମହାବିଦ୍ୟାଳୟ ପରିଚାଳନା କମିଟିର ଉପସଭାପତି । ବହୁବର୍ଷ ଧରି ରହିଥିଲେ ।

ଏହି ଅନନ୍ୟ ପ୍ରତିଭାଙ୍କର ୧୯୬୫ ମସିହା ନଭେମ୍ବର ୩୦ରେ ଅବସାନ ଘଟି ଓଡ଼ିଶାର ଏକ ଅପୂରଣୀୟ କ୍ଷତି ଘଟିଲା ।

**ପଣ୍ଡିତ ବିନାୟକ ମିଶ୍ର** ( ଶରଣକୂଳ )

ନୟାଗଡ଼ ରାଜ୍ୟରୁ ଆସି ବାଣପୁର ହାତୀମୁଣ୍ଡାରେ ବସତି ସ୍ଥାପନ କରି ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏକ ବିପ୍ଳବ ସୃଷ୍ଟି କରିଥିଲେ । ସେ ଏକାଧାରରେ ବିଜ୍ଞ, ସଂସ୍କୃତଜ୍ଞ, ଶାସ୍ତ୍ରବିତ୍ ତଥା କବି, ଲେଖକ ଓ ସାରସ୍ୱତ ସାଧକ । ତାଙ୍କର କେତେକ ଓଡ଼ିଆ କାବ୍ୟ, କବିତା ଓ ସାହିତ୍ୟ ଇତିହାସ ସେତେବେଳେ ସମଗ୍ର ଓଡ଼ିଶାରେ ଚହଳ ସୃଷ୍ଟି କରିଥିଲା । ଜଣେ ବେଦଜ୍ଞ ରୂପେ ବାଣପୁର ତଥା ନୟାଗଡ଼ ଅଞ୍ଚଳରେ ତାଙ୍କର ଯଶ ଓ ଖ୍ୟାତି ଜନମାନସରେ ପ୍ରତିଷ୍ଠିତ ହୋଇପାରିଥିଲା । ଜୀବନର ପରିଣତ ବୟସରେ ସେ ବାଣପୁର ତ୍ୟାଗକରି ତାଙ୍କର ପୁତ୍ର ତତ୍କାଳିନ ଓ.ଏ.ଏସ୍. ରାମଚନ୍ଦ୍ର ମିଶ୍ରଙ୍କ ପାଖରେ ଶେଷ ଜୀବନ କଟାଇଥିଲେ । ତାଙ୍କର ଲେଖାଗୁଡ଼ିକ ମଧ୍ୟରେ ବଙ୍କାଡ଼ର ଇତିହାସ ଓ ଭୌମ ସମାଜ (ଇଂରାଜୀରେ) ଲିଖିତ । ସେ ଜଣେ ସେତେବେଳର ଗବେଷକ ହିସାବରେ ସମାଜରେ କାର୍ଯ୍ୟାରମ୍ଭ କରିଥିଲେ । ଓ.କଲିକତାରେ ଜଣେ ଅନ୍ଧ ଅଧ୍ୟାପକଙ୍କ ପାଇଁ ଓଡ଼ିଆ ଓ ସଂସ୍କୃତରେ ଭାଷଣ ସନ୍ଦର୍ଭ ଲେଖୁଥିବାର କୁହାଯାଏ । ପରବର୍ତ୍ତିକାଳରେ ବାଣପୁରରେ ରହି ଜଣେ ଇତିହାସର ଗବେଷକ ଭାବରେ କାର୍ଯ୍ୟରତ ଥିଲେ । ସାଥିରେ ତତ୍କାଳିନ ବିଶିଷ୍ଟ ଶିକ୍ଷାବିତ୍ ମାୟାଧର ମାନସିଂହ ଓ ଅଧ୍ୟାପକ ଶ୍ରୀଧର ଦାସ ହାତିମୁଣ୍ଡାରେ ଏକତ୍ର ବାସ କରୁଥିଲେ ।

**ପଣ୍ଡିତ ନୀଳକଣ୍ଠ ରଥ**

କୁମାରାଙ୍ଗର ନୀଳକଣ୍ଠ ରଥ ବାଣପୁର ମାଇନର୍ ସ୍କୁଲର ପ୍ରଥମେ ଦ୍ୱିତୀୟ ଓ ପରେ ପ୍ରଥମ ପଣ୍ଡିତ ଏ ଅଞ୍ଚଳର ଜଣେ ଜନପ୍ରିୟ ସାହିତ୍ୟିକ ଓ ସଂସ୍କୃତଜ୍ଞ ହିସାବରେ ସମ୍ମାନ ପାଉଥିଲେ । ସେ ପରବର୍ତ୍ତୀ କାଳରେ କେଶବ ରାମାୟଣକୁ ସଂକଳନ କରି ସମସ୍ତଙ୍କ ପ୍ରଶଂସାର ପାତ୍ର ହୋଇପାରିଥିଲେ ।

ଏହି କେଶବ ରାମାୟଣ ଗ୍ରାମେ ଗ୍ରାମେ ଏତେ ଆଦୃତ ହେଉଥିଲା ଯେ ତାଙ୍କର ପ୍ରଥ ସଂସ୍କରଣ ମାତ୍ର କେତୋଟି ଦିନରେ ସରିଯାଇଥିଲା । ସେତେବେଳେ ଏହି କେଶବ ରାମାୟଣ ଇଞ୍ଜନପୁର ଓ ମଙ୍ଗରାଜପୁର ଗ୍ରାମବାସୀଙ୍କ ଦ୍ୱାରା ସୁନ୍ଦର ଭାବେ ଅଭିନୀତ ହେଉଥିବାର ସମସ୍ତେ ଜାଣନ୍ତି । ତାଙ୍କର ପୁତ୍ରମାନେ ପରବର୍ତ୍ତୀକାଳରେ ସରକାରୀ ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇ ଅବସର ନେଇଥିଲେ । ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ପୁତ୍ର କପିଳେଶ୍ୱର ରଥ ଶିକ୍ଷା ବିଭାଗରେ, ମଧ୍ୟମ ପୁତ୍ର ଗଣେଶ୍ୱର ରଥ ଭାରତୀୟ ରେଳ ସେବାରେ ଓ କନିଷ୍ଠ ପୁତ୍ର ରମେଶ ରଥ ଓଡ଼ିଶା ଜନସ୍ୱାସ୍ଥ୍ୟ ବିଭାଗରେ ଇଞ୍ଜିନିୟର ପଦବୀରେ ଅଧିଷ୍ଠିତ ହୋଇଥିଲେ । ତାଙ୍କର ନାତି ଶ୍ରୀ ଧୂର୍ଜଟି କୁମାର ରଥ ଓଡ଼ିଶା ସରକାରଙ୍କ ଜଣେ ଚିଫ୍ ଇଞ୍ଜିନିୟର ରୂପେ ନିକଟରେ ଅବସର ନେଇଛନ୍ତି ।

### ଆନନ୍ଦ ପ୍ରହରାଜ

ଅଚ୍ୟୁତରାଜପୁରର ଆନନ୍ଦ ପ୍ରହରାଜ ଜଣେ ଉଚ୍ଚକୋଟୀର ବେଦଜ୍ଞ, ସଂସ୍କୃତଜ୍ଞ ହିସାବରେ କାଶୀପୁର ଦରବାରରେ ଅତ୍ୟନ୍ତ ଖ୍ୟାତି ଲାଭ କରିଥିଲେ । ତାଙ୍କ ପରେ ତାଙ୍କର ସୁଯୋଗ୍ୟ ପୁତ୍ର ପ୍ରହରାଜ ବିନାୟକ ମିଶ୍ର ଅଳ୍ପ ବୟସରୁ କାଶୀପୁର ରାଜ୍ୟର ରାଜନୀତିକ ପରାମର୍ଶଦାତା ରୂପରେ କାଶୀପୁର ଦରବାରରେ କାର୍ଯ୍ୟରତ ଥାଇ କାଶୀପୁରକୁ କଳାହାଣ୍ଡି ରାଜାଙ୍କ ଦୌରାତ୍ମ୍ୟରୁ ବାରମ୍ବାର ରକ୍ଷା କରିଥିଲେ । ଶ୍ରୀଯୁକ୍ତ ବିନାୟକ ପ୍ରହରାଜଙ୍କ ଦୁଇ ସୁପୁତ୍ର ଶ୍ରୀ ଗିରିଜାଶଙ୍କର ମିଶ୍ର ଓ ଉମାଶଙ୍କର ମିଶ୍ର ପରବର୍ତ୍ତୀକାଳରେ ଭାରତ ସରକାରଙ୍କ ଡ଼ାକତାର ବିଭାଗ ଓ ପୋଲିସ୍ ବିଭାଗର ଅତି ଉଚ୍ଚ ପଦପଦବୀରେ କାର୍ଯ୍ୟକରିଥିବାର ସମସ୍ତେ ଜାଣନ୍ତି । ଶ୍ରୀଯୁକ୍ତ ଉମା ଶଙ୍କର ମିଶ୍ର ଏବେ ମଧ୍ୟ ଭାରତ ସରକାରଙ୍କ ସି.ବି.ଆଇ ର ସ୍ୱତନ୍ତ୍ର ନିର୍ଦ୍ଦେଶକ ରୂପେ ପଦାସୀନ ଅଛନ୍ତି ।

ପ୍ରହରାଜ ବିନାୟକ ବିନାୟକ ମିଶ୍ରଙ୍କ ଲିଖିତ୍ ଗୀତା ତତ୍ତ୍ୱ ବୋଧିନୀ ଏକ ଅତ୍ୟନ୍ତ ସରଳୀକୃତ ସମସ୍ତଙ୍କ ବୁଝିବାଭଳି ଏକ ଅମୂଲ୍ୟ ଗ୍ରନ୍ଥ ଅଟେ । ଓଡ଼ିଆ ଭାଷାରେ ଗୀତାର ପ୍ରତ୍ୟେକ ଶ୍ଳୋକକୁ ଅତି ହୃଦୟସ୍ପର୍ଶୀ ଭାଷାରେ ଏଥିରେ ବର୍ଣ୍ଣନା କରାଯାଇଛି । ସେହିଭଳି ପରିଣତ ବୟସରେ ତାଙ୍କଦ୍ୱାରା ଲିଖିତ ସପ୍ତଶତୀ ଚଣ୍ଡୀ ଓଡ଼ିଆ ଭାଷାରେ ଯେପରି ଲେଖାଯାଇଛି ତାହା ସମସ୍ତଙ୍କ ବୁଝିବାଭଳି ଏକ ମୂଲ୍ୟବାନ୍ ଗ୍ରନ୍ଥ ।

### *ମାୟାଧର ମାନସିଂହ*

କୃଷ୍ଣପ୍ରସାଦ ବ୍ଲକର ଏକ କ୍ଷୁଦ୍ର ଗ୍ରାମ ନନ୍ଦଳା ରେ ଜନ୍ମହୋଇ ଏକ ବିରାଟ ପ୍ରତିଭାସମ୍ପନ୍ନ ବ୍ୟକ୍ତି ହିସାବରେ ସମଗ୍ର ଓଡ଼ିଶାରେ ସେ ଖ୍ୟାତ । ଓଡ଼ିଶାର ଶିକ୍ଷା ଆକାଶରେ ସେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଅଟନ୍ତି । ବାଣପୁର ହାଇସ୍କୁଲରେ ସେ ପ୍ରଥମେ ଶିକ୍ଷକତା କଲାବେଳେ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର ଭୂୟସୀ ପ୍ରଶଂସା କରୁଥିଲେ । ଠିକ୍ ପରବର୍ତ୍ତୀକାଳରେ ଶ୍ରୀଯୁକ୍ତ ମାନସିଂହ ତାହାକୁ ପ୍ରମାଣିତ କଲେ ଏକ ପ୍ରତିଭାବାନ୍ ବ୍ୟକ୍ତି ଭାବରେ । ପ୍ରଖ୍ୟାତ୍ ଶିକ୍ଷାବିତ୍ ଓ ଦିଗ୍‌ଦର୍ଶକ ଭାବେ ଓଡ଼ିଶାରେ ପ୍ରତିଷ୍ଠିତ ହୋଇଥିଲେ । ବାଣପୁର ହାଇସ୍କୁଲରେ ତାଙ୍କର ଶିକ୍ଷକତା ସ୍ୱଳ୍ପକାଳ ପାଇଁ ହୋଇଥିଲେ ମଧ୍ୟ ଜୀବନର ଆଦର୍ଶଗତ ବାଞ୍ଛା ଓ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ସେ ଏହି ମହନୀୟ ବିଦ୍ୟାପୀଠରୁ ପାଇଥିବାର କୁହନ୍ତି । ତାଙ୍କର ସୁଯୋଗ୍ୟ ପୁତ୍ର ସୋନାଲ୍ ମାନସିଂହ ଏବେ ଆମେରିକାରେ ରାଷ୍ଟ୍ରଦୂତ ଭାବରେ ଅବସ୍ଥାପିତ । ଏହି ମହାନ୍ ପ୍ରତିଭା ପାରିକୁଦ ତଥା ବାଣପୁରର ଗର୍ବ ଓ ଗୌରବର ପ୍ରତୀକ କହିଲେ ଅତ୍ୟୁକ୍ତି ହେବନାହିଁ ।

## ଅଧ୍ୟାପକ ଶ୍ରୀଧର୍ ଦାସ

ପୁରୀ ଜିଲ୍ଲା କାକଟପୁର ନିବାସୀ ଶ୍ରୀଯୁକ୍ତ ଶ୍ରୀଧର ଦାସ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଡ଼ାକରାରେ ବାଣପୁର ବନବିଦ୍ୟାଳୟରେ ଶିକ୍ଷକତା କରିବାକୁ ଆସି ହାତୀମୁଣ୍ଡାଠାରେ ଜମି କିଣି ସ୍ଥାୟୀ ବାସିନ୍ଦା ହିସାବରେ ରହିଥିଲେ । ସେ ୧୯୩୫/୩୬ରୁ ୧୯୪୨ ମସିହା ପର୍ଯ୍ୟନ୍ତ ଏଠାରେ ଶିକ୍ଷକତା କରି କିଛିଦିନ ପାଇଁ ଏହି ବନବିଦ୍ୟାଳୟର ପ୍ରଧାନଶିକ୍ଷକ ଦାୟିତ୍ୱରେ ଥିଲେ ।

ଶ୍ରୀଧର ବାବୁ ବିଶ୍ୱ ସାହିତ୍ୟ ଗ୍ରନ୍ଥରୁ ଅନେକ ଓଡ଼ିଆରେ ଅନୁବାଦ କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରିଛନ୍ତି । ତାଙ୍କ ରଚିତ ୧୨୦ଖଣ୍ଡ ଅନୁବାଦ ପୁସ୍ତକ ମଧ୍ୟରୁ କବିତା ପୁସ୍ତକ ହିସାବରେ ସୋରାବ୍ ଓ ରୁସ୍ତମ୍ ବାସ୍ତବିକ ଚମତ୍କାର ଲେଖା । ସେ ପରବର୍ତ୍ତୀକାଳରେ ଓଡ଼ିଆ ସାହିତ୍ୟ ଏକାଡ଼େମୀ ପକ୍ଷରୁ ସମ୍ବର୍ଦ୍ଧିତ ହୋଇଥିଲେ ଓ ସୋଭିଏତ୍ ଦେଶ ପକ୍ଷରୁ ନେହେରୁ ପୁରସ୍କାର ପାଇଥିଲେ । ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସହ ମିଶି ସେ ସର୍ବସାର ବ୍ୟାକରଣ ରଚନା କରିଥିଲେ ଯାହା ପରବର୍ତ୍ତିକାଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଝଲକ ସୃଷ୍ଟି କରିଥିଲା । ଅବଶ୍ୟ ପରେ ସେ ବାଣପୁର ଛାଡ଼ି କଟକ କ୍ରାଏଷ୍ଟ୍ କଲେଜରେ ବହୁବର୍ଷ ଓଡ଼ିଆ ଅଧ୍ୟାପକ ତଥା ଅଧ୍ୟକ୍ଷ ହିସାବରେ ଜୀବନ ଅତିବାହିତ କରିଥିଲେ । ତାଙ୍କ ସୁଯୋଗ୍ୟ ପୁତ୍ର ଶ୍ରୀଯୁକ୍ତ ଜଗନ୍ନାଥ ଦାସ ପରବର୍ତ୍ତୀକାଳରେ ଜଣେ ଆଇ.ଏ.ଏସ୍ ପ୍ରାପ୍ତ ଉଚ୍ଚ ପଦବୀଧାରୀ ବ୍ୟକ୍ତି ହିସାବରେ ପରିଚିତ । ଆଜିର ଅନେକ ବୟସ୍କ ପୁରାତନ ଛାତ୍ର ଶ୍ରୀଧର ବାବୁଙ୍କ ସେ ସରଳ ଇଂରାଜୀ ଶିକ୍ଷାଦାନ ଓ ପ୍ରଧାନ ଶିକ୍ଷକ ହିସାବରେ ତାଙ୍କର ସୁପରିଚାଳନା ତଥା ଛାତ୍ର ବତ୍ସଳତା କଥା କହି ଆନନ୍ଦରେ ଅଭିଭୂତ ହୋଇଯାଆନ୍ତି । ଅବଶ୍ୟ ବର୍ତ୍ତମାନ କେତେ ବର୍ଷ ପୂର୍ବରୁ ସେ ତାଙ୍କର ହାତୀମୁଣ୍ଡା ଘରବାଡ଼ି ସବୁଦିନପାଇଁ ବିକ୍ରୀ କରିଦେଇଥିବାରୁ ତାଙ୍କୁ ଆମେ ବାଣପୁରର ସ୍ଥାୟୀ ବାସିନ୍ଦା କହିପାରିବା ନାହିଁ ।

## ଡଡ୍‌ସ ୱାର୍ଥ

ଜଣେ ଇଂରାଜୀ ସାହେବ ହେଲେ ମଧ୍ୟ ବାଣପୁର ପାଇଁ ତାଙ୍କର ସ୍ନେହ ଓ ଉଦାରତା ବାସ୍ତବିକ ଅନବଦ୍ୟ । ବାଣପୁର ହାଇସ୍କୁଲ ପରିଚାଳନା ସମିତିର ସଭାପତି ହିସାବରେ ବହୁବର୍ଷ ଧରି ତାଙ୍କର ନିରବଚ୍ଛିନ୍ନ ସେବା ସେତେବେଳେ ଏହି ବିଦ୍ୟାପୀଠକୁ ଏକ ଉନ୍ନତ ବିଦ୍ୟାଳୟରୂପେ ପ୍ରତିଷ୍ଠା କରିପାରିଥିଲା । ଶିକ୍ଷକ ଓ ଛାତ୍ରମାନଙ୍କ ପ୍ରତି ତାଙ୍କର ସ୍ନେହ ବ୍ୟବହାର ଏବେ ମଧ୍ୟ କେତେକ ବର୍ଣ୍ଣନା କଲାବେଳେ ଅଭିଭୂତ ହୋଇଯାଆନ୍ତି । ସେ ଖୋର୍ଦ୍ଧା ଜଙ୍ଗଲ ବିଭାଗର ଡ଼ି.ଏଫ୍.ଓ ଥିବାବେଳେ ପଣ୍ଡିତ ଗୋଦାବରୀଶଙ୍କ ପ୍ରତି ନିବିଡ଼ ଭାବେ ବନ୍ଧୁତ୍ୱରେ ବାନ୍ଧି ହୋଇଯାଇଥିବାର ଅନେକ କୁହନ୍ତି । ପଣ୍ଡିତ ମିଶ୍ରଙ୍କ ପ୍ରତି ତାଙ୍କ ଅସୀମ ଭକ୍ତି ବହୁଭାବରେ ସେ ପ୍ରମାଣିତ କରିଥିଲେ ।

## ଦୀନବନ୍ଧୁ ନରେନ୍ଦ୍ରସିଂହ ବର୍ମା

ବାଣପୁର ଥାନା ଚାଷଙ୍ଗରା ଗ୍ରାମର ସୀମାକରଣ ତଥା ଧନଶାଳୀ ବ୍ୟକ୍ତି କୁବେର ନରେନ୍ଦ୍ର ସିଂହଙ୍କ ପୁତ୍ର ଶ୍ରୀଯୁକ୍ତ ନରେନ୍ଦ୍ର ସିଂହ ବର୍ମା ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବାଣପୁରର ଏକ ବିଶିଷ୍ଟ ପ୍ରତିଭାବାନ୍ ବ୍ୟକ୍ତି ତଥା ସମାଜସେବୀ ହିସାବରେ ଅତ୍ୟନ୍ତ ଜନପ୍ରିୟ ଥିଲେ । ସେ ୧୮୮୨ରେ ଜନ୍ମହୋଇ ୧୯୫୦ରେ ଦେହତ୍ୟାଗ କରିଥିଲେ । ତତ୍କାଳୀନ ସାମାଜିକ ସ୍ଥିତିର ସମସ୍ତ ପ୍ରତିବନ୍ଧକକୁ ଆଡ଼େଇ ଦେଇ ସେ ଜଣେ ଶିକ୍ଷିତ ବ୍ୟକ୍ତି ହିସାବରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ । ସେ ବାଣପୁରର ପ୍ରଥମ ଏଣ୍ଟ୍ରାନ୍‌ସ ପାସ୍ କରିଥିବା ବ୍ୟକ୍ତି ଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହ କାନ୍ଧ କୁ କାନ୍ଧ ମିଳାଇ ବାଣପୁର ଅଞ୍ଚଳରେ ଆଧୁନିକ ଶିକ୍ଷାର ବିକାଶ ପାଇଁ ତାଙ୍କର ଉଦ୍ୟମ ଅବିସ୍ମରଣୀୟ । ଶୁଣାଯାଏ ସେ କେତେଦିନ ପାଇଁ ବାଣପୁର ହାଇସ୍କୁଲରେ ମଧ୍ୟ ଅବୈତନିକ

ଶିକ୍ଷକ ଭାବରେ କାର୍ଯ୍ୟ କରି ଇଂରାଜୀ ଓ ଇତିହାସ ପଢାଉଥିଲେ । ପରବର୍ତ୍ତୀକାଳରେ ଏହି ବିଦ୍ୟାଳୟର ସଂପାଦକ ରୂପେ କେତେବର୍ଷ ବିଦ୍ୟାଳୟ ପରିଚାଳନା କରିଥିଲେ । ତାଙ୍କ ସୁଯୋଗ୍ୟ ପୁତ୍ର ରବୀନ୍ଦ୍ରକୁମାର ବର୍ମା ପରବର୍ତ୍ତୀକାଳରେ ଜଣେ ଛାତ୍ର ବତ୍ସଳ ଅଧ୍ୟାପକ ଓ ଅଧ୍ୟକ୍ଷ ରୂପେ ଗୋଦାବରୀଶ ମହାବିଦ୍ୟାଳୟ ଓ ବାଲୁଗାଁ ମହାବିଦ୍ୟାଳୟରେ କାର୍ଯ୍ୟ କରି ଅବସର ନେଇଥିଲେ ।

### *ନୀରବ ସାଧକ ଡାକ୍ତର ରାଧାଚରଣ ପଣ୍ଡା*

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦରିଦ୍ର ଓ ଅସହାୟ ରୋଗୀ ମାନଙ୍କର ଦେବତା ପାଲଟିଥିବା, ଜଣେ ନୀରବ ସାହିତ୍ୟ ସାଧକଭାବେ ୪୫ ଖଣ୍ଡ ବହି ରଚନା କରିଥିବା ଓ ସମାଜସେବାରେ ଜଣେ ପ୍ରତୀକ ପୁରୁଷଭାବେ ଅଭୁତପୂର୍ବ ଲୋକପ୍ରିୟତା ହାସଲ କରିଥିବା ଗାନ୍ଧୀବାଦୀ ଡ଼ାକ୍ତର ରାଧାଚରଣ ପଣ୍ଡାଙ୍କର ଜନ୍ମ ଓଡ଼ିଶାର ଦକ୍ଷିଣ ବିଚ୍ଛିନ୍ନାଞ୍ଚଳ ଟିକାଲୀଠାରେ ୧୮୯୮ ମସିହାରେ । ୯ବର୍ଷ ବୟସରେ ପିତୃବିୟୋଗ, ଆର୍ଥିକ ଦୁଃସ୍ଥତି ମଧ୍ୟରେ ୩ଭାଇ ଓ ଗୋଟିଏ ଭଉଣୀର ପରିବାରକୁ ନେଇ ସେ ଆନ୍ଧ୍ରର ସାଲୁର, ଓଡ଼ିଶାର ପାରଳାଖେମୁଣ୍ଡି, ଜୟପୁରରେ ସ୍କୁଲ ଓ ମାଟ୍ରିକ୍ ଶିକ୍ଷାଲାଭ କରିଥିଲେ । ତା'ପରେ ନିଜର ଅଧ୍ୟବସାୟ ବଳରେ ୧୯୧୯ ରେ ସେତେବେଳର ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ବିଶାଖାପାଟଣା କିଙ୍ଗ୍ ଜର୍ଜ ମେଡ଼ିକାଲ କଲେଜରୁ ଏଲ୍.ଏମ୍.ପି. ଉପାଧିପ୍ରାପ୍ତ ହୋଇଥିଲେ । ଡ଼ାକ୍ତରୀ ଶିକ୍ଷା ଶେଷରେ କିଛିକାଳ ଆନ୍ଧ୍ରର ଅନନ୍ତପୁର ଜିଲ୍ଲା ଓ ପାରଳାରେ କାର୍ଯ୍ୟକରି ୧୯୨୫ ମସିହାରେ ଓଡ଼ିଶାର ପୁରୀ ଜିଲ୍ଲା ବୋର୍ଡ ଅଧୀନରେ ପୁରୀଠାରେ ମେଡ଼ିକାଲ ଅଫିସର ଭାବେ ସେ ଚାକିରୀ ଆରମ୍ଭ କରିଥିଲେ । ଏହାପରେ ପାରିକୁଦ, କାକଟପୁର, ଅସ୍ତରଙ୍ଗ, କଣାସ ପ୍ରଭୃତି ସେତେବେଳର

ଅନୁନ୍ନତ, ବନ୍ୟା ଓ ବାତ୍ୟାଗ୍ରସ୍ତ ସ୍ଥାନମାନଙ୍କରେ ସରକାରୀ ଡ଼ାକ୍ତରଖାନାରେ ଅବସ୍ଥାପିତ ହୋଇ ୧୯୨୫ରୁ ୧୯୪୫ ମସିହା ପର୍ଯ୍ୟନ୍ତ ୨୦ ବର୍ଷ କାର୍ଯ୍ୟ କରିଥିଲେ । ଏହି କାର୍ଯ୍ୟକାଳ ମଧ୍ୟରେ ଲୋକପ୍ରିୟ ଡ଼ାକ୍ତର ଭାବେ ସମଗ୍ର ପୁରୀ ଓ କଟକ ଜିଲ୍ଲାରେ ଅଗମ୍ୟ ଅଞ୍ଚଳମାନଙ୍କରେ ଚିକିତ୍ସାସେବା ଦେଇ ମାରାତ୍ମକ ରୋଗରୁ ଲୋକଙ୍କୁ ରକ୍ଷା କରିଥିଲେ । କେବଳ ସେତିକି ନୁହେଁ, ମାହାତ୍ମାଗାନ୍ଧୀ ଙ୍କ ଆହ୍ୱାନରେ ସରଳ ଜୀବନଯାପନ କରି ସୂତାକାଟି ଖଦଡ଼ ପିନ୍ଧିବା ସହିତ ଯେଉଁ ଡ଼ାକ୍ତରଖାନାରେ କାର୍ଯ୍ୟକରୁଥିଲେ ସେଠା ହତାରେ ନିଜ ହାତରେ ଫଳମୂଳ ଗଛ ଲଗାଇ ଏକ ଆଦର୍ଶ ବଗିଚା କରି ସେ ଅଞ୍ଚଳର ଲୋକଙ୍କୁ ଆତ୍ମନିର୍ଭରଶୀଳ ହେବାପାଇଁ ପ୍ରେରଣା ଦେଇଥିଲେ । ୧୯୪୫ ମସିହାରେ ବ୍ରିଟିଶ୍ ସରକାର ଅଧିନରେ ଆଉ ଚାକିରୀ ନ କରିବାର ସିଦ୍ଧାନ୍ତ ନେଇ ଇସ୍ତଫା ଦେଇ ବାଲୁଗାଁ କୁ ନିଜର କର୍ମକ୍ଷେତ୍ର ରୂପେ ବାଛି ନେଲେ ଏବଂ ସେଠାରେ ସ୍ଥାୟୀ ଘର କରି 'ସ୍ୱାଧୀନ ଚିକିତ୍ସାଳୟ' ଖୋଲି ଦରିଦ୍ର ଜନସାଧାରଣଙ୍କୁ ମାଗଣାରେ ଚିକିତ୍ସା କରିବା ସହିତ ଅନ୍ୟମାନଙ୍କୁ ଅଳ୍ପ ବ୍ୟୟରେ ଚିକିତ୍ସା କରୁଥିଲେ । ଏବେବି ଉକ୍ତ 'ସ୍ୱାଧୀନ ଚିକିତ୍ସାଳୟ' ତାଙ୍କର ସୁଯୋଗ୍ୟ ପୁତ୍ର ଡ଼ାକ୍ତର ବସନ୍ତ କୁମାର ପଣ୍ଡାଙ୍କ ଦ୍ୱାରା ପରିଚାଳିତ ହୋଇଚାଲିଛି ।

କେବଳ ଜଣେ ଡ଼ାକ୍ତର ନୁହଁନ୍ତି, ସାହିତ୍ୟିକ ଭାବେ ସ୍ୱର୍ଗତ ଡ଼ାକ୍ତର ରାଧାଚରଣ ପଣ୍ଡା ୪୫ରୁ ଊର୍ଦ୍ଧ୍ୱ ମୂଲ୍ୟବାନ ପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟ ଜଗତକୁ ସମୃଦ୍ଧ କରିଛନ୍ତି । ତାଙ୍କ ରଚିତ "ସ୍ୱାସ୍ଥ୍ୟ" ପୁସ୍ତକ ୧୯୨୮ ମସିହାରୁ ୧୯୬୦ ମସିହା ପର୍ଯ୍ୟନ୍ତ ରାଜ୍ୟର ସ୍କୁଲମାନଙ୍କରେ ପ୍ରଥମିକଠାରୁ ମାଟ୍ରିକ୍ ପର୍ଯ୍ୟନ୍ତ ୨ଟି ବିଭାଗରେ ପ୍ରଥମ ତଓଡ଼ିଆ ସ୍ୱାସ୍ଥ୍ୟ ପୁସ୍ତକ ରୂପେ ପ୍ରଚଳିତ ରହି ୨୮ତମ ସଂସ୍କରଣ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ତାହା ପୂର୍ବରୁ ଇଂରେଜ ଶାସନ କାଳରେ କେବଳ ଇଂରାଜୀ ପାଠ୍ୟପୁସ୍ତକ ଚଳୁଥିଲା ।

ସମାଜସେବା କ୍ଷେତ୍ରରେ ଯେଉଁଠି କାର୍ଯ୍ୟ କରିଛନ୍ତି ଡ଼ାକ୍ତର ରାଧାଚରଣ ସେ ଅଞ୍ଚଳର ଯୁବକମାନଙ୍କୁ ସଂଗଠିତ କରି ସେ ଅଞ୍ଚଳର ଉନ୍ନତି କରାଇଛନ୍ତି । ପାରିକୁଦ ମାଇନର ସ୍କୁଲ, ବାଲୁଗାଁ, ବାଣପୁର ଅଞ୍ଚଳରେ ସମସ୍ତ ଅଗମ୍ୟ ଗାଁ ଗୁଡ଼ିକୁ ରାସ୍ତା ନିର୍ମାଣ କରାଇବା ସହିତ ସମସ୍ତ ଗାଁରେ ପୋଖରୀ, କୂଅ, ଶିଶୁମାନଙ୍କ ପାଇଁ ପ୍ରାଥମିକ ବିଦ୍ୟାଳୟ, ଯୁବକ ଓ ପ୍ରୌଢମାନଙ୍କ ପାଇଁ ପାଠାଗାର ସ୍ଥାପନ କରି ଏ ଅଞ୍ଚଳର ବହୁତ କିଛି ଉନ୍ନତି କରିଛନ୍ତି । ବାଲୁଗାଁ ମାଇନର ସ୍କୁଲକୁ ହାଇସ୍କୁଲ କରିବାରେ, ନିକାକାରପୁର କଲେଜ ପ୍ରତିଷ୍ଠାରେ ମଧ୍ୟ ତାଙ୍କର ଅବଦାନ ଥିଲା । ଜଣେ ସ୍ନେହୀ, ସରଳ, କର୍ମଠ, ପ୍ରେରଣାଦାୟୀ ବ୍ୟକ୍ତିଭାବେ ସେ ସବୁରି ହୃଦୟରେ ସ୍ଥାନ ଅଧିକାର କରିଛନ୍ତି । ଆଜିର ଉନ୍ନତ ବାଲୁଗାଁ, ବାଣପୁର ଓ ଏହାର ଚତୁଃପାର୍ଶ୍ୱସ୍ଥିତ ଗ୍ରାମ ଗୁଡ଼ିକର ଉନ୍ନତିରେ ତାଙ୍କର ମହାର୍ଘ ଅବଦାନ ନିହିତ ରହିଛି ।

୧୯୭୪ ମସିହାରେ ୭୬ବର୍ଷ ବୟସରେ ୨୯।୧୦।୭୪ ତାରିଖରେ ଡ଼ାକ୍ତର ରାଧାଚରଣ ପଣ୍ଡାଙ୍କ ଦେହାବସାନ ହୋଇଛି । ଜଣେ ନୀରବ ସାଧକ ଡ଼ାକ୍ତର ରାଧାଚରଣ ପଣ୍ଡା ଅସାମାନ୍ୟ ପ୍ରତିଭା ପ୍ରଦର୍ଶନ କରି ଚିକିତ୍ସା, ସମାଜସେବା, ସାହିତ୍ୟ କ୍ଷେତ୍ରରେ ସର୍ବଶ୍ରେଷ୍ଠ କୃତିତ୍ୱ ପ୍ରଦର୍ଶନ କରିଥିଲେ ।

ସୁଦର୍ଶନ ପାଣିଗ୍ରାହୀ

ଗଞ୍ଜାମ ପୋଲସରା ଅଞ୍ଚଳର ବିଶିଷ୍ଟ ପାଣିଗ୍ରାହୀ ପରିବାର ସନ୍ତାନ ଥିଲେ ଶ୍ରୀଯୁକ୍ତ ସୁଦର୍ଶନ ପାଣିଗ୍ରାହୀ । ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ଗୋଦାବରୀଶଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଗୋଦାବରୀଶଙ୍କ ବନବିଦ୍ୟାଳୟ ନିକଟରେ ସ୍ଥାୟୀ ବସତି ସ୍ଥାପନ କରି ରହିଲେ । ଗୋଦାବରୀଶଙ୍କ ସେ ଥିଲେ ଧର୍ମପୁତ୍ର ଓ ଅତିପ୍ରିୟ । ସଦାସର୍ବଦା ଖଦଡ଼ ପୋଷାକ ପରିହିତ ମିଷ୍ଟଭାଷୀ ସୁଦର୍ଶନ ବାବୁଙ୍କୁ ବାଣପୁରରେ ସମସ୍ତେ

ଡ଼ାକୁଥିଲେ ସାନବାବୁ । ପଣ୍ଡିତ ଗୋଦାବରୀଶଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ସାହାଯ୍ୟ କରିବାକୁ ସେ ଜୀବନର ବ୍ରତ ଭଳି ମନେ କରୁଥିଲେ । ଅବଶ୍ୟ ପରବର୍ତ୍ତୀକାଳରେ ଗୋଦାବରୀଶଙ୍କ ଜ୍ୟେଷ୍ଠପୁତ୍ର ପଣ୍ଡିତ ରଘୁନାଥ ମିଶ୍ର ତଥା ପାଣିଗ୍ରାହୀ ପରିବାର ଭିତରେ ମନୋମାଳିନ୍ୟ ହୋଇଥିବାର ଅନେକ କୁହନ୍ତି । ସେତେବେଳେ ବହୁ ଲୋକ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ଦେଖା ନପାଇଲେ ସୁଦର୍ଶନ ବାବୁଙ୍କ ଆଗରେ ନିଜ ନିଜର ଆପତ୍ତି ଅଭିଯୋଗ କରି ଉପକୃତ ମଧ୍ୟ ହେଉଥିଲେ । ପ୍ରବାଦ ଥିଲା, ବାବୁଙ୍କୁ ନ ଦେଖିଲେ ସାନବାବୁଙ୍କୁ ଦେଖାକରି ମନର ବେଦନା ଜଣାଅ ଫଳ ଆପେ ଆପେ ମିଳିଯିବ । ଏ ଓଡ଼ିଶା ହାଇକୋର୍ଟର ପ୍ରଥମ ମୁଖ୍ୟ ବିଚାରପତି ଓ ଓଡ଼ିଶା ବିଧାନସଭାର ବାଚସ୍ପତି ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀ ସୁଦର୍ଶନ ବାବୁଙ୍କ ଅଗ୍ରଜ ଥିଲେ । ୧୯୭୫ ମସିହାରେ ସୁଦର୍ଶନ ବାବୁଙ୍କ ଦେହାନ୍ତ ହେଲା ତାଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀଯୁକ୍ତ ସୁକଲ୍ୟାଣ ପାଣିଗ୍ରାହୀ ବାଣପୁର ଗୋଦାବରୀଶ ମହାବିଦ୍ୟାଳୟର ଅଧ୍ୟାପକ ତଥା ଅଧ୍ୟକ୍ଷ ହିସାବରେ ଏହି ମହାବିଦ୍ୟାଳୟର ଅଶେଷ ଉନ୍ନତି କରିଥିବାର ସମସ୍ତେ ଜାଣନ୍ତି ।

### ବାମନ ଚରଣ ଦାସ

କଟକ ଜିଲ୍ଲା ଭାଗଲପୁର ଅଞ୍ଚଳର ଶ୍ରୀଯୁକ୍ତ ଦାସ ସତ୍ୟବାଦୀ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ବେଳେ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର କାର୍ଯ୍ୟଧାରା ଓ ଶୃଙ୍ଖଳିତ ଛାତ୍ରଜୀବନ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ୧୯୩୦ ମସିହାରେ ସେତେବେଳର ଆଇ.ଏ. ପାସ୍ କରିଥିବା ଏହି ବିରଳ ବ୍ୟକ୍ତିତ୍ୱଙ୍କୁ ବାଣପୁର ବନବିଦ୍ୟାଳୟର ଜଣେ ଶିକ୍ଷକ ରୂପେ ପଣ୍ଡିତ ମିଶ୍ର ନିଯୁକ୍ତି ଦେଇ ତାଙ୍କଠାରୁ ଯାହା ଆଶା କରିଥିଲେ ତାହାଠାରୁ ବହୁ ଅଧିକ ସେ କରିପାରିଥିଲେ । ଆଇ.ଏ. ହୋଇଥିଲେ ମଧ୍ୟ ସେ ଉଚ୍ଚ ଶ୍ରେଣୀରେ ଗଣିତ,

ଇଂରାଜୀ, ଇତିହାସ, ଭୂଗୋଳ ପଢାଇବାରେ ଅତ୍ୟନ୍ତ ଧୁରନ୍ଧର ଥିଲେ । ବାଣପୁର ମାଟିରେ ଶିକ୍ଷାର ବିସ୍ତାର କରିବାରେ ବାମନବାବୁଙ୍କ ନିରବଚ୍ଛିନ୍ନ ଉଦ୍ୟମ ତାଙ୍କୁ ଏକ ମହାମାନବ ରୂପେ ପ୍ରତିପାଦିତ କରିପାରିଥିଲା । ୧୯୫୦ ମସିହାରୁ ୧୯୮୨ ମସିହା ପର୍ଯ୍ୟନ୍ତ ସେ ବାଣପୁର ହାଇସ୍କୁଲ ଓ ପରବର୍ତ୍ତୀକାଳରେ ବାଣପୁର ମାଇନର୍ ସ୍କୁଲର ପ୍ରଧାନଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ । ଏ ଅଞ୍ଚଳର ଏବର ସମସ୍ତ ଅଶୀତି ପ୍ରାପ୍ତ ବୃଦ୍ଧମାନେ ଥିଲେ ତାଙ୍କର ପ୍ରିୟ ଶିଷ୍ୟ । ବାମନ ବାବୁଙ୍କ ବେତ ମାଡ଼ କିମ୍ବା ପିତୃପ୍ରତିମ ସ୍ନେହବୋଳା ଡ଼ାକ ଏ ମାଟିର ଅନେକ ମଣିଷଙ୍କୁ ମଣିଷ ପରି ଗଢି ତୋଳିଥଇଲା । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା ତ୍ୟନ୍ତ ଉଚ୍ଚକୋଟୀର ।

ବାଣପୁରରେ ଏପରି ଏକ ଗ୍ରାମ ନାହିଁ ଯେଉଁଥିରେ ବାମନବାବୁଙ୍କ ଛାତ୍ର ନାହାନ୍ତି । ସେ ଥିଲେ ଗୁରୁଣାଂ ଗୁରୁ । ଖଣ୍ଡିଏ ଖଦଡ଼ ଲୁଗା, ଖଦଡ଼ ପଞ୍ଜାବୀ ଓ ହଳେ ଚପଲ ଥିଲା ତାଙ୍କର ଭୂଷଣ । ଶିକ୍ଷା ଓ ସମାଜ କଲ୍ୟାଣ ଛଡ଼ା ସାହିତ୍ୟ ପ୍ରତି ତାଙ୍କର ପ୍ରଗାଢ ଅନୁରକ୍ତି ଥିଲା । 'ଆଲୋକ' ନାମକ ଏକ ଶିଶୁ ଉପଯୋଗୀ ପୁସ୍ତକ ସେ ସେତେବେଳେ ପ୍ରକାଶ କରିଥିଲେ । ଯେଉଁ ଲୋକପ୍ରିୟ ମାସିକ 'ମଳୟ' ପ୍ରତିକା ସେତେବେଳେ ଓଡ଼ିଶାର ପୁରପଲ୍ଲୀରେ ଆଦୃତ ହେଉଥିଲା । ବାମନବାବୁ ତାହାର ମୂଖ୍ୟ ସଂପାଦକ ଓ ତାଙ୍କର ଜ୍ୟେଷ୍ଠପୁତ୍ର ଯତୀନ୍ଦ୍ର କୁମାର ତାହାର ସଂପାଦନ ଥିଲେ । ତାଙ୍କର ୩ଟି କନ୍ୟାଙ୍କ ମଧ୍ୟରୁ ଶୈଳବାଳା ମହାନ୍ତି ବର୍ତ୍ତମାନ ଭୁବନେଶ୍ୱରର ଜଣେ ଜନପ୍ରିୟ ଶିଶୁ ବିଶେଷଜ୍ଞ, ଦ୍ୱିତୀୟ କନ୍ୟା କୁନ୍ତଳା କୁମାରୀ କୃଷି ବିଜ୍ଞାନ କଲେଜର ଅଧ୍ୟାପିକା । ସର୍ବୋପରି ତାଙ୍କର କନିଷ୍ଠ ପୁତ୍ର ଶ୍ରୀମାନ୍ ଅଶୋକ ଦାସ ବାଲୁଗାଁ ପୌରପରିଷଦର ପ୍ରାକ୍ତନ ଅଧ୍ୟକ୍ଷ ଓ ଜଣେ କର୍ମଠ, ପରୋପକାରୀ ସମାଜସେବୀ । ତାଙ୍କର ଅଧ୍ୟକ୍ଷତା ବେଳେ ବାଲୁଗାଁ ଅଞ୍ଚଳର ସେ ଯେଉଁ ପ୍ରକାର

ସର୍ବବିଧ ଉନ୍ନତି କରିପାରିଥିଲେ ତାହା ଅତ୍ୟନ୍ତ ପ୍ରଶଂସନୀୟ । ଏହି ବିରଳ ପ୍ରତିଭା ୧୯୮୩ ମସିହାରେ ଇହଲୀଳା ସମ୍ବରଣ କରିଥିଲେ । ସେତେବେଳେ ତାଙ୍କ ଶବ ଶୋଭାଯାତ୍ରାରେ ବାଣପୁର ଅଞ୍ଚଳରେ ସହସ୍ର ସହସ୍ର ନରନାରୀଙ୍କ ନୟନରୁ ଛୁଟାଇ ଦେଇଥିଲା ଲୋତକର ଶ୍ରାବଣୀ ବନ୍ୟା । ଏ ଅଞ୍ଚଳର ଅଧିବାସୀଙ୍କ ପାଇଁ ସେ ଜଣେ ପ୍ରାତଃ ସ୍ମରଣୀୟ ବ୍ୟକ୍ତି-ଏଥିରେ ସନ୍ଦେହ ନାହିଁ ।

## ନୃସିଂହ ସାମନ୍ତସିଂହାର

ବାଣପୁର ନରେନ୍ଦ୍ରପୁର ଗ୍ରାମର ଶ୍ରୀଯୁକ୍ତ ସାମନ୍ତସିଂହାର ତତ୍କାଳୀନ ଜଣେ ଏଲ୍.ଏମ୍.ପି ଡ଼ାକ୍ତର ଥିଲେ । ଚାକିରିର ସଂକୀର୍ଣ୍ଣ ଗଣ୍ଡି ଭିତରେ ନିଜକୁ ଆବଦ୍ଧ ନକରି ସମାଜସେବା ପାଇଁ ଆଗେଇ ଆସିଥିଲେ । ଲୋକମାନଙ୍କ ସହ ମିଶି ସେମାନଙ୍କ ହାରିଗୁହାରି ଶୁଣି କିଛିଟା ପ୍ରତିକାର କରିବା ପାଇଁ ସେ ଅହରହ ଉଦ୍ୟମ କରୁଥିଲେ । ପୁରୀ ଲୋକସଭା ମଣ୍ଡଳୀରୁ ସାଂସଦ ପାଇଁ ପ୍ରତିଯୋଗିତା କରି ସେ ନିର୍ବାଚିତ ହୋଇପାରିଥିଲେ ଓ ୫ବର୍ଷ ଧରି ଏ ଅଞ୍ଚଳର ପ୍ରତିନିଧିତ୍ୱ କରିଥିଲେ । ପରବର୍ତ୍ତୀକାଳରେ ସେ ଏ ଅଞ୍ଚଳର କୃଷକ ଓ ଶ୍ରମିକ ମାନଙ୍କ ପାଇଁ ଏକ ସଂଘ ଗଠନ କରି ତାହାର ନେତୃତ୍ୱ ନେଇଥିଲେ । ତାଙ୍କ ମତରେ ଚାଷ ଯାହାର ଜମି ତାହାର ହେବା ଉଚିତ୍ ବୋଲି ସେ ଦୃଢ଼ ସ୍ୱରରେ କହୁଥିଲେ । ତାଙ୍କ ସହ ଏ ଅଞ୍ଚଳର ହରିବନ୍ଧୁ ପରିଡ଼ା ଓ ନରେନ୍ଦ୍ରପୁରର ରାମଚନ୍ଦ୍ର ମହାରଥୀ ମଧ୍ୟ ସହଯୋଗ ଦେଉଥିଲେ ।

କିଛିଦିନପରେ ରାଜନୀତିରୁ ଅବସର ନେଇ ସେ ସରକାରୀ ଡ଼ାକ୍ତର ଭାବେ ବାଲୁଗାଁରେ ପ୍ରଥମେ ଖୋଲିଥିବା ସରକାରୀ ଡ଼ାକ୍ତରଖାନାରେ ନିଯୁକ୍ତି ପାଇଥିଲେ । ଲୋକମାନଙ୍କ ସେବାରେ ନିଜକୁ ଉତ୍ସର୍ଗ କରିବାକୁ ଏହା ଥିଲା ତାଙ୍କ ପାଇଁ ଅପୂର୍ବ ସୁଯୋଗ । ସେ ସର୍ବଦା ନ୍ୟାୟ ପାଇଁ ଦୃଢ଼ ଭାବରେ

ଲଡୁଥିଲେ । ଏଥିପାଇଁ କଳୁଷିତ ରାଜନୀତି ତାଙ୍କୁ ଭଲ ଲାଗିଲା ନାହିଁ । ଫଳରେ କଂଗ୍ରେସ ଦଳ ତ୍ୟାଗ କରି ସେ ପରବର୍ତ୍ତିକାଳରେ କିଛିଦିନ ଲୋକଦଳରେ ସାମିଲ୍ ହୋଇଥିଲେ । ଜଣେ ସ୍ପଷ୍ଟବାଦୀ ଦୃଢମନା ମଣିଷ ଭିତରେ ସେ ଥିଲେ ଅଗ୍ରଗଣ୍ୟ । ତାଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀ ଆଶୁତୋଷ ସାମନ୍ତସିଂହାର ବର୍ତ୍ତମାନ ଭାରତୀୟ ବନବିଭାଗର ଜଣେ ଉଚ୍ଚ ପଦସ୍ଥ କର୍ମକର୍ତ୍ତା ଓ କନିଷ୍ଠ ପୁତ୍ର ଶ୍ରୀ ମୁରଲୀ ଧର ସାମନ୍ତସିଂହାର ଇନ୍‌ସୁରାନ୍‌ସ କମ୍ପାନୀର ଜଣେ ଉନ୍ନୟନ ଅଧିକାରୀ ଅଟନ୍ତି ।

## ଅନ୍ତର୍ଯ୍ୟାମୀ ଶତ୍ରୁଶଲ୍ୟ

ରାହାଣବେଲି ଗ୍ରାମର ଅନ୍ତର୍ଯ୍ୟାମୀ ଶତୃଶଲ୍ୟ ଜଣେ ଧନଶାଳୀ ବ୍ୟକ୍ତି ଥିଲେ ଓ ତାଙ୍କର ଉଦ୍ୟମରେ ପରବର୍ତ୍ତୀ କାଳରେ ଆଙ୍କୁଲା ବ୍ରାହ୍ମଣକୁଶଡ଼ିହ ଠାରେ ବାଣପୁର ପଞ୍ଚଦୋଳ ଡାଙ୍ଗାରେ ଏକ ସପ୍ତଦୋଳ ମେଳନ କରାଇଥିଲେ । ଏବେ ମଧ୍ୟ ପ୍ରତିବର୍ଷ ଦେବ ଦେବୀମାନଙ୍କ ଭୋଗଲାଗି ଏହି ପରିବାର ଦ୍ୱାରା କାର୍ଯ୍ୟ ସମ୍ପାଦିତ ହୁଏ । ତାଙ୍କ ପରେ ତାଙ୍କର ପୁତ୍ର ଶ୍ରୀ ଶତ୍ରୁଘ୍ନ ଶତ୍ରୁଶଲ୍ୟ କଂଗ୍ରେସ ଦଳର ଜଣେ ଜ୍ୟେଷ୍ଠ କର୍ମୀ ତଥା ଏ ଅଞ୍ଚଳର କର୍ମକର୍ତ୍ତା ଥାଇ ଅନେକ ଜନହିତକର କାର୍ଯ୍ୟ କରିଥିଲେ । ସେ ମଧ୍ୟ ଜିଲ୍ଲା ତଥା ପ୍ରଦେଶ କମିଟିର ସଭ୍ୟ ଥିଲେ । ସେହି ପରିବାରର ଦାୟାଦ ଶ୍ରୀ ମୋହନସୁନ୍ଦର ଶତୃଶଲ୍ୟ ଆଜି ଏ ଅଞ୍ଚଳରେ ସମାଜ ସେବାରେ ନିଯୁକ୍ତ ଓ ଜ୍ୟେଷ୍ଠ ପୁତ୍ର ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ଶତ୍ରୁଶଲ୍ୟ ଜଣେ ପ୍ରବୀଣ ଅଧ୍ୟାପକ ।

## ହରିବନ୍ଧୁ ପରିଡ଼ା

ବାଣପୁର ଗୋଡ଼ିପଦର ଗ୍ରାମର ହରିବନ୍ଧୁ ପରିଡ଼ା ସେ ସମୟର ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି ଥିଲେ । ଇଂରେଜ ସରକାରଙ୍କ ଠାରୁ ସେ ରାୟବାହାଦୂର ଉପାଧି ପାଇଥିଲେ । ବିଭିନ୍ନ ସାମାଜିକ କାର୍ଯ୍ୟରେ ନିଜକୁ ନିୟୋଜିତ କରାଇ ଲୋକମାନଙ୍କ ପାଇଁ ସର୍ବଦା ସ୍ୱର ଉତ୍ତୋଳନ କରୁଥିଲେ । ଏପରିକି ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ବିରୋଧରେ ନିର୍ବାଚନରେ ଅବତୀର୍ଣ୍ଣ ହୋଇ ସେ ଥରେ ହାରିଯାଇଥିଲେ । କୃଷକ ଓ ଶ୍ରମିକ ମାନଙ୍କୁ ସଂଗଠିତ କରାଇ ଏ ଅଞ୍ଚଳରେ ସେ ସୃଷ୍ଟି କରିଥିଲେ ଏକ ଭାଗଚାଷୀ ଆନ୍ଦୋଳନ । ତାଙ୍କୁ ଅନେକ ଇଂରେଜମାନଙ୍କ ପକ୍ଷପାତି ବୋଲି ଅଭିହିତ କରିଥିଲେ ।

## ପଣ୍ଡିତ ଲୋକନାଥ କର

ହରିପୁର ଶାସନର ଶ୍ରୀଯୁକ୍ତ ଲୋକନାଥ କର ଜଣେ ବାଗ୍ମି ଓ ବିଶିଷ୍ଟ ପାଲାକାର ରୂପେ ସମଗ୍ର ଓଡ଼ିଶାରେ ପ୍ରକ୍ୟାତ ହୋଇପାରିଥିଲେ । ସେ ଏ ଅଞ୍ଚଳର ସମସ୍ତ ପରବର୍ତ୍ତି ପାଲାକାର ମାନଙ୍କର ଗୁରୁ ଅଟନ୍ତି । ତାଙ୍କର ସମସାମୟିକ କଟକ ଜିଲ୍ଲାର ତତ୍କାଳିନ ବିଶିଷ୍ଟ ପାଲାକାର, ହରିନାଥ, ନରିନାଥ, ଓ ସୁବଳ କର ପ୍ରଭୃତିଙ୍କ ସହ ଅନେକବାର ବାଦିପାଲା କରି ଜୟଯୁକ୍ତ ହୋଇପାରିଥିଲେ । ତାଙ୍କର ପାଣ୍ଡିତ୍ୟ ଓ ଓଡ଼ିଶା ତଥା ସଂସ୍କୃତ ସାହିତ୍ୟରେ ଅଗାଧ୍ୟ ଜ୍ଞାନ ବାସ୍ତବିକ୍ ଅତୁଳନୀୟ ଥିଲା । ଥରେ ପୁରୀରେ ଦୀର୍ଘ ୧ମାସ ୧୫ଦିନ ଧରି ପାଲା ଗାୟନ କରି ସେ ଏକ ରେକର୍ଡ ସୃଷ୍ଟି କରିଥିଲେ । ଗାୟକ ଶିରୋମଣି ଉପାଧିରେ ଭୂଷିତ ଶ୍ରୀଯୁକ୍ତ କର ବାଣପୁର ଅଞ୍ଚଳର ଗର୍ବ ଓ ଗୌରବ ଥିଲେ । ବର୍ତ୍ତମାନର ପାଲାକାର ସଂଘ ଦ୍ୱାରା ନାଚୁଣୀ ନିକଟସ୍ଥ ବଡ଼ପଦର ଗ୍ରାମ ନିକଟରେ ତାଙ୍କର ସ୍ମୃତିରକ୍ଷା ପାଇଁ ତାଙ୍କର ମୂର୍ତ୍ତି ସ୍ଥାପନ କରାଯାଇଅଛି । ତାଙ୍କର ସୁପୁତ୍ର ଶ୍ରୀଯୁକ୍ତ ରାମଚନ୍ଦ୍ର କର ଏବେ ଏ ଅଞ୍ଚଳରେ ମଧ୍ୟ ଜଣେ ପ୍ରତିଷ୍ଠିତ ପାଲାକାର ଅଟନ୍ତି ।

ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ସେ କାଳର ଅନ୍ୟମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ପର୍ଶୁରାମ ହରିଚନ୍ଦନ ( ଜଣେ ସୁଲେଖକ, ନାଟ୍ୟକାର ତଥା ସମାଜସେବୀ ) ଶିକ୍ଷକ ଜଗନ୍ନାଥ ମହାପାତ୍ର, ଦୋଲମୁଣ୍ଡି ଗ୍ରାମର ନାଟ୍ୟକାର ନଟବର ପ୍ରଧାନ ( କଳାର ପୂଜାରୀ ) ବାଣପୁରର ଲୋକି ପ୍ରସାଦ ରାମ (ବାଣପୁରର ଧର୍ମଶାଳାର ପ୍ରତିଷ୍ଠାତା ) ନାଚୁଣୀ ଆମ୍ବଝରର ଗୋଦାବରୀଶ ନନ୍ଦ ( ନାଚୁଣୀ ହାଇସ୍କୁଲର ପ୍ରତିଷ୍ଠାତା ) ଶିଳ୍ପୀରତ୍ନ ଉପେନ୍ଦ୍ର ମହାରଥୀଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନେ ପ୍ରତ୍ୟେକ କଳା, ସାହିତ୍ୟ ତଥା ସାମାଜିକ କଲ୍ୟାଣ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ ।

ସେହିଭଳି ଭୀମପୁରର କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ବାଲୁଗାଁର କଳାକାର ଶ୍ରୀଯୁକ୍ତ ପଦ୍ମଚରଣ ପଟ୍ଟନାୟକଙ୍କ ଓଡ଼ିଆ ସାହିତ୍ୟ ତଥା ସଂସ୍କୃତିକୁ ଯେଉଁ ମହନୀୟ ଅବଦାନ ରହିଛି ତାହା ଏହି କିଛିବର୍ଷ ତଳର କଥା ଓ ସମସ୍ତେ ଭଲଭାବରେ ଜାଣନ୍ତି । ସେମାନଙ୍କ ବିଷୟରେ ବର୍ଣ୍ଣନା କରିବାକୁ ଆବଶ୍ୟକ ମନେ କରୁନାହିଁ ।

ଅନ୍ୟମାନଙ୍କ ମଧ୍ୟରେ କୁମାରାଙ୍ଗର କବିରାଜ ରଘୁନାଥ ମହାପାତ୍ର, ଅନ୍ତରକିଆରୀର ନାରାୟଣ ମାନସିଂହ ତଥା ବାଣପୁରର ବଙ୍କିମ ଚନ୍ଦ୍ର ପଟ୍ଟଯୋଷୀ ଏ ଅଞ୍ଚଳର ସୁଚିକିତ୍ସକ ରୂପେ ଖ୍ୟାତି ଅର୍ଜନ କରିଥିଲେ କୁମାରାଙ୍ଗର ଶ୍ରୀଧର ମହାପାତ୍ର, ଭୀମପୁରର ଅନନ୍ତ ମିଶ୍ର ଓଡ଼ିଶା ର ବିଶିଷ୍ଟ ପୁସ୍ତକ ପ୍ରକାଶକ ହିସାବରେ ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବୃଦ୍ଧିରେ କର୍ଣ୍ଣଧାର ହୋଇଥିଲେ । କଟକ ଷ୍ଟୁଡ଼େଣ୍ଟ ଷ୍ଟୋର ଓ ଗ୍ରନ୍ଥ ମନ୍ଦିର ଏବେ ମଧ୍ୟ ଓଡ଼ିଶାରେ ବିଶିଷ୍ଟ ପୁସ୍ତକ ଭଣ୍ଡାର ରୂପେ ପ୍ରଖ୍ୟାତ ।

ଏତଦ୍‌ଭିନ୍ନ ଆହୁରିଅନେକ ପ୍ରତିଭାବାନ୍ ବ୍ୟକ୍ତି ହୁଏତ ବିଂଶ ଶତାବ୍ଦୀର ଏହି ପ୍ରଥମାର୍ଦ୍ଧରେ ସାହିତ୍ୟ, ସଂସ୍କୃତି ଓ କଳା କ୍ଷେତ୍ରରେ ବିଶେଷ ଉତ୍କର୍ଷ ଲାଭ କରିଥିବେ ଯେଉଁମାନଙ୍କ ବିଷୟରେ ଖବର ସଂଗ୍ରହ କରାଯିବା ଦରକାର ।

ବଣ ମଲ୍ଲୀ ବଣରେ ମଉଳିଗଲା ଭଳି ସେମାନଙ୍କୁ ହୁଏତ ଏ ସମାଜ ଜାଣିପାରି ନାହିଁ । ଭବିଷ୍ୟତରେ ଉଦ୍ୟମ ଜାରି ରଖିଲେ ଏଭଳି ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନଙ୍କ ବିଷୟରେ ଆଲୋକପାତ କରାଯାଇପାରିବ । ବାଣପୁରର ଇତିକଥାରେ କ୍ରମାନ୍ୱୟରେ ପ୍ରଥମଥରପାଇଁ ଏକ ପୂର୍ଣ୍ଣାଙ୍ଗ ଚିତ୍ର ପ୍ରଦାନ କରିବାକୁ ସମସ୍ତ ଚେଷ୍ଟା କରାଯାଇଛି । ଏହାକୁ ଅଧିକ ପ୍ରମାଣଯୋଗ୍ୟ କରିବାପାଇଁ ଭବିଷ୍ୟତର ଲେଖକ ତଥା ଐତିହାସିକ ମାନେ ଚେଷ୍ଟିତ ହେବେ ବୋଲି ମୋର ଆଶା ।

# ତଥ୍ୟ ଧାରିକା


୧. ଚୈତନ୍ୟ ଚରିତାମୃତ
ଦକ୍ଷିଣ ଓଡ଼ିଶା ଓ ଚୈତନ୍ୟ - ଶ୍ରୀମତୀ ଶାନ୍ତିଲତା କର
ମହାପ୍ରଭୁଙ୍କ ପଦଯାତ୍ରା ( ସମ୍ବାଦ )

୨. Orissa Vol.- I - N.N. Hunter
Orissa Vol.- II - N.N. Hunter

୩. History of Orissa - R.D. Banarjee

୪. ଶତାବ୍ଦୀର ସୂର୍ଯ୍ୟ - ସୁରେନ୍ଦ୍ର ମହାନ୍ତି

୫. ଖୁରୁଧା ଦର୍ପଣ - ଦିଗମ୍ବର ହରିଚନ୍ଦନ

୬. ପାଇକ ଖେଦା - କହ୍ନାଇ ଚମ୍ପତିରାଏ

୭. ଓଡ଼ିଶା ଇତିହାସ - ଡ଼ଃ ଯଜ୍ଞ କୁମାର ସାହୁ

୮. ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ଇତିହାସ - ଡ଼ଃ ସୂର୍ଯ୍ୟନାରାୟଣ ଦାସ

୯. ଓଡ଼ିଶା ଇତିହାସ - ହରେକୃଷ୍ଣ ମହତାବ

୧୦. ଖୁରୁଧା ଇତିହାସ - କେଦାରନାଥ ମହାପାତ୍ର

୧୧. ପାରିକୁଦ - ଡ଼ାଃ ରାଧାଚରଣ ପଣ୍ଡା

୧୨. ମଦଳା ପାଞ୍ଜି - ପ୍ରାଚୀ ସଂସ୍କରଣ - ଡ଼ାଃ ଆର୍ତ୍ତବଲ୍ଲଭ ମହାନ୍ତି

୧୩. ପ୍ରାଚୀନ ଉତ୍କଳ - ଜଗବନ୍ଧୁ ସିଂହ

୧୪. Puri District gezetter - N. Senapati
D.C. Kuanr

୧୫. ସତ୍ୟବାଦୀ ମହାତ୍ମ୍ୟ - ରଶ୍ମିରଞ୍ଜନ ମହାପାତ୍ର

୧୬. ଓଡ଼ିଶାର ଦେବାଦେବୀ - ମିଳିତ ଲେଖକ ବୃନ୍ଦ

୧୮. ଉତ୍କଳ ଇତିହାସର ଅଜ୍ଞାତ ଅଧ୍ୟାୟ - ଚକ୍ରଧର ମହାପାତ୍ର

୧୯. ପାଇକ ବିଦ୍ରୋହ - ଡ଼ଃ ସୂର୍ଯ୍ୟନାରାୟଣ ଦାସ

୨୦. ସଂକ୍ଷିପ୍ତ ଓଡ଼ିଶା ଓ ନୟାଗଡ଼ ଇତିହାସ - ପ୍ରାଣକୃଷ୍ଣ ଆଚାର୍ଯ୍ୟ

୨୧. ଓଡ଼ିଆ ସାହିତ୍ୟର କ୍ରମ ପରିଣାମ - ପଣ୍ଡିତ ନୀଳକଣ୍ଠ ଦାସ